# ଶ୍ରୀମଦ୍ଭଗବଦ୍ଗୀତା ।

ସଂସ୍କୃତ ମୂଳ ସହିତ ।

—॥୦॥—

ଶ୍ରୀ ଫକୀରମୋହନ ସେନାପତିଙ୍କଦ୍ୱାରା

ଉତ୍କଳ ପଦ୍ୟରେ ଅନୁବାଦିତ

ଏବଂ

ଶ୍ରୀ ଭଗବାନଚନ୍ଦ୍ର ଦାସଙ୍କଦ୍ୱାରା ପ୍ରକାଶିତ ।

---

ବାଲେଶ୍ୱର ।

ଉତ୍କଳ ପ୍ରିଣ୍ଟିଂ କୋମ୍ପାନିଙ୍କ ଯନ୍ତ୍ରାଳୟରେ

ମୁଦ୍ରିତ ।

୧୮୮୯

## ବିଜ୍ଞାପନ ।

ଭଗବାନ ବେଦବ୍ୟାସଙ୍କ ପ୍ରଣୀତ ମହାଭାରତ, ଭାରତର ବିଦ୍ୟାଭଣ୍ଡାରର ଅମୂଲ୍ୟ ସମ୍ପତ୍ତି; ପୁଣି ଶ୍ରୀମଦ୍ଭଗବଦ୍ଗୀତା ସେହି ଭାରତର ନବନୀତସ୍ୱରୂପ । ଏହି ଭଗବଦ୍ଗୀତା ଯେ କେମନ୍ତ ସାର ଏବଂ ପବିତ୍ର ଗ୍ରନ୍ଥ, ତାହା ଅମୃତ ବୋଲିବା ବାହୁଲ୍ୟମାତ୍ର ।

ଉଂପିତ ପୁସ୍ତକ ଶ୍ରୀଯୁକ୍ତ ବାବୁ ଫକୀରମୋହନ ସେନାପତି ଙ୍କଦ୍ୱାରା ଉତ୍କଳ ପଦ୍ୟରେ ଅନୁବାଦିତ ହୋଇଅଛି । ଅନୁବାଦକ ମହାଶୟ ପଦ୍ୟମାନଙ୍କୁ ସରଳ, ସୁବୋଧ କରିବା ବିଷୟରେ ଯଥାସାଧ୍ୟ ପ୍ରୟାସ କରିଅଛନ୍ତି । ବାବୁ ଫକୀରମୋହନ ସେନାପତି ଜଣେ ପଦ୍ୟ ଲେଖକ ବୋଲି ଓଡ଼ିଶାରେ ସୁଖ୍ୟାତ, ତାଙ୍କ ଅନୁବାଦିତ "ରାମାୟଣ ଏବଂ ମହାଭାରତ ଏ ବିଷୟରେ ସାକ୍ଷ୍ୟ ପ୍ରଦାନ କରୁଅଛି ।

ଏହି ଭଗବଦ୍ଗୀତା ମଧ୍ୟରେ ସଂସ୍କୃତ ଶ୍ଳୋକ ଏବଂ ତହିଁ ତଳେ ସେହି ଶ୍ଳୋକର ପଦ୍ୟାନୁବାଦ ଦିଆ ଯାଇଅଛି । ଓଡ଼ିଶାର ଧର୍ମପିପାସୁ, ଭକ୍ତମଣ୍ଡଳୀ ଏବଂ ଶ୍ରୋତ୍ରାଦିମାନଙ୍କ ହସ୍ତରେ ଅମ୍ଭେ ଏହି ପୁସ୍ତକ ଖଣ୍ଡିକ ଅର୍ପଣ କଲୁଁ । ଇତି

ବାଲେଶ୍ୱର<br>
୧ ମାଘ, ଶକାବ୍ଦା, ୧୮୦୮ } ଶ୍ରୀ ଭଗବାନଚନ୍ଦ୍ର ଦାସ<br>
ପ୍ରକାଶକ ।

# ଶ୍ରୀମଦ୍ ଭଗବଦ୍ ଗୀତା ।

---

## ପ୍ରଥମୋଽଧ୍ୟାୟଃ ।

### ଧୃତରାଷ୍ଟ୍ର ଉବାଚ ।

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ ।
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ ॥ ୧ ॥

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ଯୁଦ୍ଧ ବୀରଗଣେ ।
ଆମ୍ଭ ପୁତ୍ରଗଣ ପୁଣି ପଣ୍ଡୁଙ୍କ ନନ୍ଦନେ ॥
କି କି କାର୍ଯ୍ୟ କରଛନ୍ତି ବୋଲ ହେ ସଞ୍ଜୟ ।
ଏହା ଶୁଣିବାକୁ ଆମ୍ଭ ଇଚ୍ଛା ଉପଜଇ ॥ ୧ ॥

### ସଞ୍ଜୟ ଉବାଚ ।

ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ ବ୍ୟୂଢ଼ଂ ଦୁର୍ଯ୍ୟୋଧନସ୍ତଦା ।
ଆଚାର୍ଯ୍ୟମୁପସଙ୍ଗମ୍ୟ ରାଜା ବଚନମବ୍ରବୀତ୍ ॥ ୨ ॥

ପାଣ୍ଡବଦଳଙ୍କୁ ବ୍ୟୂହେ ଦେଖି ଦୁର୍ଯ୍ୟୋଧନ ।
ଦ୍ରୋଣାଚାର୍ଯ୍ୟ ପାଶେ ଯାଇ ବୋଇଲେ ବଚନ ॥ ୨ ॥

ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂଂ ।
ବ୍ୟୂଢ଼ାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା ॥ ୩ ॥

ହେ ଆଚାର୍ଯ୍ୟ ପାଣ୍ଡବଙ୍କ ଦେଖନ୍ତୁ ସଇନୀ ।
ଅପାର ଏ ସୈନ୍ୟ ସଂଖ୍ୟା କେ ପାରିବ ଗଣି ।
ଆପଣଙ୍କ ପ୍ରିୟ ଶିଷ୍ୟ ଦ୍ରୁପଦ ସ୍ୱଛିନ ।
ସଜାଇ ଅଛନ୍ତି ପୁତ୍ର ସର୍ବେ ବ୍ୟୂହେ ସୈନ୍ୟ ॥

ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜ୍ଜୁନ ସମାଯୁଧି ।
ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ ॥ ୪ ॥
ଏଥିମଧ୍ୟେ ମହା ଯୋଦ୍ଧା ଭୀମାର୍ଜ୍ଜୁନ ସର ।
ପଞ୍ଚାଳ ବିରାଟ ଦୁଇ ଦେଶ ଛତ୍ରଧାରୀ ॥ ୪ ॥
ଧୃଷ୍ଟକେତୁ ଶ୍ଚେକିତାନଃ କାଶୀରାଜଶ୍ଚ ବୀର୍ଯ୍ୟବାନ୍ ।
ପୁରୁଜିତ୍ କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଙ୍ଗବଃ ॥ ୫ ॥
ଧୃଷ୍ଟକେତୁ ଚେକିତାନ କାଶୀର ରାଜନ ।
ପୁରୁଜିତ କୁନ୍ତି ଭୋଜ ଶୈବ ନରବର ॥ ୫ ॥
ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍ ।
ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବ୍ବଏବ ମହାରଥାଃ ॥ ୬ ॥
ଯୁଧାମନ୍ୟୁ ଉତ୍ତମୌଜା ସୁଭଦ୍ରା କୁମରେ ।
ଦ୍ରୌପଦୀଙ୍କ ପୁତ୍ରମାନେ ଯୁଦ୍ଧେ ମହାବୀରେ ॥ ୬ ॥
ଅସ୍ମାକନ୍ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ ।
ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ ॥ ୭ ॥
ଆମ୍ଭମାନଙ୍କର ମଧ୍ୟେ ଯେ ସର୍ବ୍ବ ପ୍ରଧାନ ।
ହେ ଅଗ୍ରଜ ସେମାନଙ୍କ ନାମ ବୋଲୁଁ ଶୁଣ ॥ ୭ ॥
ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତିଞ୍ଜୟଃ ।
ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତି ର୍ଜୟଦ୍ରଥଃ ॥ ୮ ॥
ଆପଣ ସମିତିଞ୍ଜୟ କୃପ ଭୀଷ୍ମ କର୍ଣ୍ଣ ।
ଅଶ୍ୱତ୍ଥାମା ସୌମଦତ୍ତ ଜୟଦ୍ରଥ ବିକର୍ଣ୍ଣ ॥ ୮ ॥
ଅନ୍ୟେଚ ବହବଃ ଶୂରା ମଦର୍ଥେ ତ୍ୟକ୍ତଜୀବିତାଃ ।
ନାନା ଶସ୍ତ୍ର ପ୍ରହରଣାଃ ସର୍ବ୍ବେ ଯୁଦ୍ଧ ବିଶାରଦାଃ ॥ ୯ ॥
ଅନ୍ତର ବହୁତ ବୀର ଛତ୍ର ଆମ୍ଭ ପକ୍ଷ ।
ମହାରଥ ଧନୁର୍ଦ୍ଧାରୀ ରଣେ ମହା ଦକ୍ଷ ॥

ଅମ୍ଭ ପାଇଁ ଯୁଦ୍ଧେ ପ୍ରାଣ ଦେବାକୁ ପ୍ରସ୍ତୁତ ।
ଅଛନ୍ତି ସେମାନେ ଏଥେ ନାହିଁ ଅନ୍ୟ ମତ ॥ ୯ ॥

ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଳଂ ଭୀଷ୍ମାଭିରକ୍ଷିତଂ ।
ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଳଂ ଭୀମାଭିରକ୍ଷିତଂ ॥ ୧୦ ॥

ଆମ୍ଭମାନଙ୍କର ସୈନ୍ୟ ଭୀଷ୍ମ ସୁରକ୍ଷିତ ।
ଜଣା ଯାଉ ନାହିଁ ଯୁଦ୍ଧେ ହେବେ ସମରଥ ॥
ପାଣ୍ଡବମାନଙ୍କ ସୈନ୍ୟେ ଭୀମ ରକ୍ଷାକାରୀ ।
ସକଳେ ଉତ୍ସାହୀ ମହା ଯୋଦ୍ଧା ଧନୁର୍ଦ୍ଧାରୀ ॥ ୧୦ ॥

ଅୟନେଷୁ ଚ ସର୍ବେଷୁ ଯଥାଭାଗମବସ୍ଥିତାଃ ।
ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବଏବ ହି ॥ ୧୧ ॥

ସମସ୍ତ ଆପଣମାନେ ଭାଗ ଭାଗ ହୋଇ ।
କରନ୍ତୁ ଭୀଷ୍ମଙ୍କ ରକ୍ଷା ବ୍ୟୂହ ଦ୍ୱାରେ ଥାଇ ॥ ୧୧ ॥

ତସ୍ୟ ସଞ୍ଜନୟନ୍ ହର୍ଷଂ କୁରୁବୃଦ୍ଧଃ ପିତାମହଃ ।
ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ ॥ ୧୨ ॥

ରାଜା ମନ ତୁଷ୍ଟି ପାଇଁ ଶାନ୍ତନୁ ନନ୍ଦନ ।
ସିଂହ ନାଦ ଶଙ୍ଖ ନାଦ କଲେ ଘନ ଘନ ॥ ୧୨ ॥

ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ ।
ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ ॥ ୧୩ ॥

ଅନନ୍ତର ଶଙ୍ଖ ଭେରି ଗୋମୁଖ ମାଦଳ ।
ସହସା ସେ ସୈନ୍ୟ ମଧ୍ୟେ ପଡ଼ିଲା ଚହଳ ॥ ୧୩ ॥

ତତଃ ଶ୍ୱେତୈର୍ହୟୈର୍ୟୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ ।
ମାଧବଃ ପାଣ୍ଡବଶ୍ଚୈବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ ॥ ୧୪ ॥

ଶ୍ୱେତ ଅଶ୍ୱ ଯୁକ୍ତ ରଥେ ଶ୍ରୀକୃଷ୍ଣ ଅର୍ଜୁନ ।
ଆନନ୍ଦରେ ଶଙ୍ଖ ନାଦ କଲେ ଘନ ଘନ ॥ ୧୪ ॥

ପାଞ୍ଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଞ୍ଜୟଃ ।
ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖଂ ଭୀମକର୍ମା ବୃକୋଦରଃ ॥ ୧୫ ॥

ବଜାଇଲେ ପାଞ୍ଚଜନ୍ୟ ପ୍ରଭୁ ଦାମୋଦର ।
ଦେବଦତ୍ତ ଧନଞ୍ଜୟ ପୌଣ୍ଡ୍ର ବୃକୋଦର ॥ ୧୫ ॥

ଅନନ୍ତବିଜୟଂ ରାଜା କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।
ନକୁଳଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ ॥ ୧୬ ॥

ମହାରାଜା ଯୁଧିଷ୍ଠିର ଧର୍ମଙ୍କ ନନ୍ଦନ ।
ଅନନ୍ତ ବିଜୟ ବଜାଇଲେ ଘନ ଘନ ॥
ସୁଘୋଷ ଶଙ୍ଖକୁ ବଜାଇଲେ ସେ ନକୁଳ ।
ମଣିପୁଷ୍ପ ଶଙ୍ଖ ସହଦେବ ମହାବଳ ॥ ୧୬ ॥

କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ ।
ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ ॥ ୧୭ ॥

ଶିଖଣ୍ଡୀ ବିରାଟ ମହାରଥ କାଶିପତି ।
ମହାବୀର ଧୃଷ୍ଟଦ୍ୟୁମ୍ନ ସାତ୍ୟକି ପ୍ରଭୃତି ॥

ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ ।
ସୌଭଦ୍ରଶ୍ଚ ମହାବାହୁଃ ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ ॥ ୧୮ ॥

ଦ୍ରୁପଦ ରାଜନ ଦ୍ରୁପଦଙ୍କ ପୁତ୍ରମାନେ ।
ବଜାଇଲେ ସର୍ବେ ଶଙ୍ଖ ସୁଭଦ୍ରା ନନ୍ଦନେ ॥ ୧୮ ॥

ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍ ।
ନଭଶ୍ଚ ପୃଥିବୀଂ ଚୈବ ତୁମୁଲୋ ବ୍ୟନୁନାଦୟନ୍ ॥ ୧୯ ॥

ଧାର୍ତ୍ତରାଷ୍ଟ୍ରମାନଙ୍କର ହୃଦୟ ବିଦାରି ।
ଶଙ୍ଖ ଧ୍ୱନି ପୂର୍ଣ୍ଣ ହେଲା ଶୂନ୍ୟ ବସୁନ୍ଧରୀ ॥ ୧୯ ॥

ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ ।
ପ୍ରବୃତ୍ତେ ଶସ୍ତ୍ରସମ୍ପାତେ ଧନୁରୁଦ୍ୟମ୍ୟ ପାଣ୍ଡବଃ ।

ହୃଷୀକେଶଂ ତଦା ବାକ୍ୟମିଦମାହମହୀପତେ ॥ ୨୦ ॥
ଧାର୍ତ୍ତରାଷ୍ଟ୍ର ଗଣେ ଦେଖି ଯୁଦ୍ଧରେ ଉଦ୍ୟତ ।
କପିଧ୍ୱଜ ରଥେ ବସି ମହାବୀର ପାର୍ଥ ॥
ଗାଣ୍ଡୀବରେ ଗୁଣ ଦେଇ ବଜାଇ ସମରେ ।
ବୋଇଲେ ବଚନ୍ତି କର ଦେବକୀ କୁମରେ ॥ ୨୦ ॥
ଅର୍ଜ୍ଜୁନ ଉବାଚ ।
ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ ॥ ୨୧ ॥
ନିବେଦନ କରୁଅଛି ଅହେ ଯଦୁମଣି ।
ଦୁଇ ସେନା ମଧ୍ୟସ୍ଥଳେ ରଥ ଯାଉ ଘେନି ॥ ୨୧ ॥
ଯାବଦେତାନ୍ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍ ।
କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ରଣ ସମୁଦ୍ୟମେ ॥ ୨୨ ॥
ଦେଖିବୁଁ ହେ ବାସୁଦେବ କରି ନିରୀକ୍ଷଣ ।
ଯୁଦ୍ଧ ପାଇଁ ଆସିଛନ୍ତି ଯେଉଁ ବୀରଗଣ ॥
ସେମାନଙ୍କ ମଧ୍ୟେ ଅଛନ୍ତି କେଉଁ କେଉଁ ବୀର ।
ଯେମାନଙ୍କ ସଙ୍ଗେ ଆମ୍ଭେ କରିବୁଁ ସମର ॥ ୨୨ ॥
ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ ।
ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେ ଯୁଦ୍ଧେପ୍ରିୟଚିକୀର୍ଷବଃ ॥ ୨୩ ॥
ମନ୍ଦ ବୁଦ୍ଧି ଧାର୍ତ୍ତରାଷ୍ଟ୍ର ପ୍ରିୟ କାମନାରେ ।
ସମରକୁ ଆସିଛନ୍ତି ଯେଉଁ ଯେଉଁ ବୀରେ ॥
ଯାବତ ତାହାଙ୍କୁ କରି ନାହୁଁ ନିରୀକ୍ଷଣ ।
ତାବତ ହେ କୃଷ୍ଣ ରଥ କରନ୍ତୁ ସ୍ଥାପନ ॥ ୨୩ ॥
ସଞ୍ଜୟ ଉବାଚ ।
ଏବମୁକ୍ତୋ ହୃଷୀକେଶୋ ଗୁଡ଼ାକେଶେନ ଭାରତ ।
ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମଂ ॥ ୨୪ ॥

ଏକଥା ବୋଲନ୍ତେ ପାର୍ଥ ପ୍ରଭୁ ଯଦୁନାଥ ।
ଦୁଇ ସେନା ମଧ୍ୟସ୍ଥଳେ ରଖି ଦେଲେ ରଥ ॥ ୨୪ ॥

ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଞ୍ଚ ମହୀକ୍ଷିତାଂ ।
ଉବାଚ ପାର୍ଥପଶ୍ୟୈତାନ୍ ସମବେତାନ୍ କୁରୂନିତି ॥ ୨୫ ॥

ବୋଇଲେ ଶ୍ରୀକୃଷ୍ଣ ଏହୁଁ ଦେଖ ଫାଲଗୁନ ।
ଭୀଷ୍ମ ଦ୍ରୋଣ ପ୍ରମୁଖ ସକଳ ସେନାନୀ ॥ ୨୫ ॥

ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ ପିତୃନଥ ପିତାମହାନ୍ ।
ଆଚାର୍ଯ୍ୟାନ୍ ମାତୁଳାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା ।
ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପି ॥ ୨୬ ॥

ଦେଖିଲେ ଅର୍ଜ୍ଜୁନ ପିତା ଭ୍ରାତା ପିତାମହ ।
ଆଚାର୍ଯ୍ୟ ମାତୁଳ ପୁତ୍ର ବାନ୍ଧବ ସମୂହ ॥
ଶ୍ୱଶୁର ସୁହୃଦ ଦୁଇ ସେନା ମଧ୍ୟସ୍ଥଳେ ।
ଯୁଦ୍ଧ ପାଇଁ ରହି ଅଛନ୍ତି ଏକ ମେଳେ ॥ ୨୬

ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ ସର୍ବାନ୍ ବନ୍ଧୂନବସ୍ଥିତାନ୍ ।
କୃପୟା ପରୟାବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍ ॥ ୨୭ ॥

ଅର୍ଜ୍ଜୁନ ଯୁଦ୍ଧରେ ଦେଖି ସ୍ଥିତ ବନ୍ଧୁଗଣେ ।
ବୋଇଲେ ଶ୍ରୀକୃଷ୍ଣେ କୃପା ଖେଦଯୁକ୍ତ ମନେ ॥ ୨୭ ॥

ଅର୍ଜ୍ଜୁନ ଉବାଚ ।

ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ ଯୁଯୁତ୍ସୂନ୍ ସମବସ୍ଥିତାନ୍ ।
ସୀଦନ୍ତି ମମ ଗାତ୍ରାଣି ମୁଖଞ୍ଚ ପରିଶୁଷ୍ୟତି ॥ ୨୮ ॥

ହେ ଶ୍ରୀକୃଷ୍ଣ ଯୁଦ୍ଧେ ସ୍ଥିତ ବନ୍ଧୁଗଣେ ଦେଖି ।
ସୀଦୁଛି ମୋ ଦେହ ମୁଖ ଯାଉଅଛି ଶୁଖି ॥ ୨୮ ॥

ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।
ଗାଣ୍ଡୀବ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ ॥ ୨୯ ॥

କମ୍ପୁଛି ଶରୀର ହେଉଅଛି ରୋମାଞ୍ଚ ।
ହସ୍ତୁଁ ମୋର ହେଉଅଛି ଗାଣ୍ଡୀବ ସ୍ଖଳିତ ॥ ୨୯ ॥

ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ ।
ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ ॥ ୩୦ ॥

ସ୍ଥିର ହୋଇ ରହିବାକୁ ନାହିଁ ଦେହେ ବଳ ।
ମନ ମୋର ନିରନ୍ତର ହେଉଛି ଚଞ୍ଚଳ ॥
ଚତୁର୍ଦ୍ଦିଗେ ଦେଖୁଅଛି ଅମଙ୍ଗଳ ଚିହ୍ନ ।
ବ୍ୟାକୁଳ ହେଉଛି ମନ ହେ ମଧୁସୂଦନ ॥ ୩୦ ॥

ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ।
ନ କାଙ୍କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ ॥ ୩୧ ॥

ବନ୍ଧୁଗଣେ ନାଶ କରି ଦେଖୁ ନାହିଁ ଶ୍ରେୟ ।
ପ୍ରୟୋଜନ ନାହିଁ ମୋର ରାଜ୍ୟ ବା ବିଜୟ ॥

କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା
ଯେଷାମର୍ଥେ କାଙ୍କ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ ॥୩୨॥

ରାଜ୍ୟ କିମ୍ବା ଜୀବନରେ ପ୍ରୟୋଜନ ନାହିଁ ।
ସେହି ସର୍ବ ଭୋଗ ଇଚ୍ଛା ଯେମାନଙ୍କ ପାଇଁ ॥ ୩୨ ॥

ତ ଇମେଽବସ୍ଥିତା ଯୁଦ୍ଧେ ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ ।
ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ ॥୩୩॥

ସେହି ପିତାମହ ପିତା ଆଚାର୍ଯ୍ୟ ଭୂମରେ ।
ପ୍ରାଣ ତେଜିବାକୁ ଆସି ଅଛନ୍ତି ସମରେ ॥୩୩॥

ମାତୁଳାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଳାଃ ସମ୍ବନ୍ଧିନସ୍ତଥା ।
ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ ॥୩୪॥

ମାତୁଳ ଶ୍ୱଶୁର ନାତି ଶଳା ସମ୍ବନ୍ଧିନ ।
ଏମାନେ କଲେହେଁ ନାଶ [illegible] ଜୀବନ ॥

ନ କରନ୍ତୁ ସେମାନଙ୍କ ସହିତ ସମର ।
ହେ ମଧୁସୂଦନ ଏହା କରନ୍ତୁ ସ୍ଥିର ॥୩୪॥
ଅପି ତ୍ରୈଲୋକ୍ୟ ରାଜ୍ୟସ୍ୟ ହେତୋଃ କିନ୍ନୁ ମହୀକୃତେ ।
ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ ॥୩୫॥
ରାଜ୍ୟ କଥା ପଛେ ଥାଉ ତ୍ରିଲୋକ ରାଜତ୍ୱ ।
ପାଇଲେହେଁ ଏମାନଙ୍କୁ ନ କରିବ ହତ ॥
ଅତଏବ ବୋଲୁଅଛି ତୁହେ ଚକ୍ରଧାରୀ ।
ନ ଜନ୍ମିବ ପ୍ରୀତ ଧାର୍ତ୍ତରାଷ୍ଟ୍ରେ ବଧ କରି ॥୩୫॥
ପାପମେବା ଶ୍ରୟେଦସ୍ମାନ୍ ହତ୍ୱୈତାନାତତାୟିନଃ ।
ତସ୍ମାନ୍ନାର୍ହା ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସବାନ୍ଧବାନ୍ ।
ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ ॥୩୬॥
ଆତତାୟୀ ହେଲେମଧ ଧାର୍ତ୍ତରାଷ୍ଟ୍ରମାନେ ।
ଅବଶ୍ୟ ଜନ୍ମିବ ପାପ ବଧ କଲେ ରଣେ ॥
ଅତଏବ ହେ ମାଧବ ବୋଲୁଅଛି ମୁହିଁ ।
ବାନ୍ଧବମାନଙ୍କୁ ବଧି ସୁଖ ହେବ ନାହିଁ ॥
ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ ।
କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ ॥୩୭॥
କୁଳକ୍ଷୟ ମିତ୍ରଦ୍ରୋହ ପାପ ଆଚରଣେ ।
ଲୋଭରତ ହୋଇ ଦେଖୁ ନାହାନ୍ତି ଏମାନେ ॥
କଥଂ ନ ଜ୍ଞେୟମସ୍ମାଭିଃ ପାପାଦସ୍ମାନ୍ନିବର୍ତ୍ତିତୁମ୍ ।
କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ ॥୩୮॥
ମାତ୍ର ଆମ୍ଭେମାନେ ଦେଖୁଅଛୁଁ ଜନାର୍ଦ୍ଦନ ।
କୁଳକ୍ଷୟ ଅଟଇ ବହୁତର ପାପମାନ ॥
ଜାଣି ଶୁଣି ହେଉଁ କେଉଁ ରୂପରେ ପ୍ରବୃତ୍ତ ।

ଅତଏବ ଏଥିଁ ଶାନ୍ତ ରହିବା ଉଚିତ ॥୩୮॥

କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ ।
ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ ॥୩୯॥

ଗୋବିନ୍ଦେ ଜନାର୍ଦ୍ଦନ ଯଦି ହୁଏ କୁଳ ନାଶ ।
ସନାତନ କୁଳଧର୍ମ ହୁଅଇ ଧ୍ୱଂସ ॥
ନାଶ ଯେବେ ହେବ କୁଳଧର୍ମ ସନାତନ ।
ହୋଇଯାଏ ମହାପାପେ କୁଳ ପରିପୂର୍ଣ୍ଣ ॥

ଅଧର୍ମାଭିଭବାତ୍ କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ ।
ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଙ୍କରଃ ॥୪୦॥

କୁଳଧର୍ମ ନାଶ ହେଲେ କୁଳନାରୀମାନେ ।
ପ୍ରବୃତ୍ତ ହୁଅନ୍ତି ବ୍ୟଭିଚାର ଆଚରଣେ ॥
ହୁଅନ୍ତି ଉତ୍ପନ୍ନ ବର୍ଣ୍ଣସଙ୍କର ସନ୍ତାନ ।
ଏହା ତ ନ ଜାଣ ତୁମ୍ଭେ ହେ ମଧୁସୂଦନ ॥୪୦॥

ସଙ୍କରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ ।
ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ ॥୪୧॥

ଏ ବର୍ଣ୍ଣସଙ୍କର ଲୋକେ କୁଳକୁ ନାଶନ୍ତି ।
କୁଳ ନାଶକାରଗଣେ ନରକେ ପଡନ୍ତି ॥
ପିଣ୍ଡୋଦକ କ୍ରିୟା କୁଳେ ହୁଅଇ ବିଲୁପ୍ତ ।
ପିତୃଲୋକ ଚିରକାଳ ହୁଅନ୍ତି ପତିତ ॥୪୧॥

ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଙ୍କରକାରକୈଃ ।
ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ ॥୪୨॥

କୁଳ ନାଶକାରୀ ବର୍ଣ୍ଣସଙ୍କର କାରଣ ।
ଯେମାନେ ଘଟନ୍ତି ତାଙ୍କ ଏତେ ଦୋଷ ଜାଣ ॥
ଏମାନଙ୍କ ଦୋଷେ ପୁଣି ହୁଅଇ ବିନାଶ ।

ଜାତି ଧର୍ମ କୁଳଧର୍ମ ଅଶ୍ରମ ବିଶେଷ ॥୪୬॥
ଉତ୍ସନ୍ନ କୁଳଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ ।
ନରକେ ନିୟତଂ ବାସୋଭବତୀତ୍ୟନୁ ଶୁଶ୍ରୁମଃ ॥୪୩॥
ଶୁଣିଅଛୁ କୁଳ ନାଶକାରୀ ଲୋକଗଣେ ।
ଅନନ୍ତ ନରକେ ବାସ କରନ୍ତି ସେମାନେ ॥
ଅହୋ ବତ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତା ବୟଂ ।
ଯଦ୍ରାଜ୍ୟସୁଖଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ ॥୪୪
ତ ମହତ ପାପ କରୁଅଛୁଁ ଭନୁଷ୍ଠାନ ।
ରାଜ୍ୟ ସୁଖ ପାଇଁ ବନାଶିବୁଁ ବନ୍ଧୁଗଣ ॥୪୪॥
ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ ।
ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ ॥୪୫॥
ନ ଧରବି ଶସ୍ତ୍ର ନ କରବୁଁ ପ୍ରତିକାର ।
ଧାର୍ତ୍ତରାଷ୍ଟ୍ର ପକ୍ଷେ ମୋତେ କରନ୍ତୁ ସଂହାର ॥
ସେମାନେ ଯଦ୍ୟପି ମୋତେ କରିବେ ନିଧନ ।
ତହିଁ କରବୁଁ ଅମ୍ଭେ ତହିଁ ଶ୍ରେୟଃଜ୍ଞାନ ॥

ସଞ୍ଜୟ ଉବାଚ ।

ଏବମୁକ୍ତ୍ୱାର୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍ ।
ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ ॥୪୬॥
ଏତେ ବୋଲି ପାର୍ଥ ଘୋର ସମର ଭୂମିରେ ।
ଧନୁଶର ତ୍ୟାଗ କରି ବସିଲେ ରଥରେ ॥

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ସୈନ୍ୟ ଦର୍ଶନୋ ନାମ ପ୍ରଥମୋଽଧ୍ୟାୟଃ ।

ଦ୍ୱିତୀୟୋଽଧ୍ୟାୟଃ ।

ସଞ୍ଜୟ ଉବାଚ ।

ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଳେକ୍ଷଣଂ ।
ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ ॥
କୃପାଳୁ ବିଷଣ୍ଣ ଅଶ୍ରୁପୂର୍ଣ୍ଣ ନେତ୍ର ପାର୍ଥେ ।
ବୋଇଲେ ଏମନ୍ତ କଥା ପ୍ରଭୁ ଗୋପୀନାଥେ ॥୧॥

ଶ୍ରୀଭଗବାନୁବାଚ ।

କୁତସ୍ତ୍ୱା କଶ୍ମଳମିଦଂ ବିଷମେ ସମୁପସ୍ଥିତଂ ।
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜ୍ଜୁନ ॥୨॥
ଏପର ବିଷମ କାଳେ ବୋଲ ପାର୍ଥବୀର ।
ଅନାର୍ଯ୍ୟ ଅସ୍ୱର୍ଗ୍ୟ ଯାହା ନୁହେ କୀର୍ତ୍ତିକର ॥
ସର୍ବ୍ବଦା କରନ୍ତି ନିନ୍ଦା ଯାହା ସାଧୁଜନ ।
ଉପସ୍ଥିତ ହେଲା ତୁମ୍ଭ ମୋହ କି କାରଣ ॥

ମା କ୍ଲୈବ୍ୟଂ ଗଚ୍ଛ କୌନ୍ତେୟ ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବ୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥୩॥
ନ କର ଅର୍ଜ୍ଜୁନ ତୁମ୍ଭେ କ୍ଳୀବତ୍ୱ ଆଶ୍ରୟ ।
ତୁମ୍ଭ ପକ୍ଷେ ନୁହେ ଏହା ଉଚିତ ସମୟ ॥
କ୍ଷୁଦ୍ର ହୃଦେ ଜାତ ହୁଏ ଯେଉଁ ଦୁର୍ବ୍ବଳତା ।
ପରିତ୍ୟାଗ କର ତାହା ଆହେ ମହାରଥା ॥୩॥

ଅର୍ଜ୍ଜୁନ ଉବାଚ ।

କଥଂ ଭୀଷ୍ମମହଂ ସଂଖ୍ୟେ ଦ୍ରୋଣଞ୍ଚ ମଧୁସୂଦନ ।
ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ ॥୪॥
ପୂଜନୀୟ ଗୁରୁଜନ ଭୀଷ୍ମ ପୁଣି ଦ୍ରୋଣ ।
କିପରି କରିବି ସେମାନଙ୍କ ସଙ୍ଗେ ରଣ ॥

ଯୁଦ୍ଧ କଥା ଯେମାନଙ୍କୁ ବୋଲି ନ ଯୋଗାଇ ।
କପର ପେଷିବ ଶର ସେମାନଙ୍କୁ ମୁହିଁ ॥୪॥

ଗୁରୂନ୍ ହତ୍ୱାହି ମହାନୁଭାବାନ୍ ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହ-ଲୋକେ । ହତ୍ୱାର୍ଥ କାମାଂସ୍ତୁ ଗୁରୂନିହୈବ ଭୁଞ୍ଜୀୟ ଭୋଗାନ୍ ରୁଧିର ପ୍ରଦିଗ୍ଧାନ୍ ॥୫॥

ଯଦି ନ ବଧି ଗୁରୁଜନେ । ବଷ୍ଟରୁଁ ଭିକ୍ଷାନ୍ନ ଭୋଜନେ ।
ଇହଲୋକରେ ଅଟେ ଶ୍ରେୟ । କଦାଚ ନୁହଇ ବଧେୟ ॥
ବିନାଶ କରି ଗୁରୁଜନେ । ରକ୍ତାକ୍ତ କାମାର୍ଥ ଭୋଜନେ ॥

ନ ଚୈତଦ୍ବିଦ୍ମଃ କତରନ୍ନୋ ଗରୀୟୋ ଯଦ୍ୱା ଜୟେମ ଯଦି ବା ନୋ ଜୟେୟୁଃ । ଯାନେବ ହତ୍ୱା ନ ଜିଜୀବିଷାମସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ ॥୬॥

ବିଶେଷେ ଏହି ଘୋର ଯୁଦ୍ଧେ । ଜୟ ଅଜୟ ଦୁଇ ମଧ୍ୟେ ।
କାହାର ଅଧିକ ଗୌରବ । ନ ଜାଣୁ ଏହା ହେ କେଶବ ।
ଯାହାଙ୍କୁ କରଣ ବିନାଶ । ଜୀବନେ ନାହିଁ ଅଭିଳାଷ ।
ସେ ଧୃତରାଷ୍ଟ୍ର ପୁତ୍ରଗଣ । ସମ୍ମୁଖେ ଛନ୍ତି ବିଦ୍ୟମାନ ॥୬॥

କାର୍ପଣ୍ୟ ଦୋଷୋପହତସ୍ୱଭାବଃ ପୃଚ୍ଛାମି ତ୍ୱାଂ ଧର୍ମସମ୍ମୂଢ଼ଚେତାଃ । ଯଚ୍ଛ୍ରେୟଃସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନଂ ॥୭॥

କୁଳକ୍ଷୟରୁ ଯେଉଁ ଦୋଷ । ତହିଁ ହୋଇଛି ବୁଦ୍ଧି ନାଶ ।
ଧର୍ମାନ୍ଧ ଚିତ୍ତ ହୋଇଅଛି । ଏଥିକୁ ମୁହିଁ ପଚାରୁଛି ।
ମୁଁ ତୁମ୍ଭ ଶିଷ୍ୟ ଭଗବାନ । ପୁଣି ମୁଁ ପଶିଛି ଶରଣ ।
ମୋ ପକ୍ଷେ ଯାହା ଅଟେ ହିତ । ବୋଲନ୍ତୁ ଅହେ ଜଗନ୍ନାଥ ॥

ନହି ପ୍ରପଶ୍ୟାମି ମମାପନୁଦ୍ୟାଦ୍ୟଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍ । ଅବାପ୍ୟ ଭୂମାବସପତ୍ନମୃଦ୍ଧଂ ରାଜ୍ୟଂ ସୁରାଣାମପି ଚାଧିପତ୍ୟଂ ॥୮॥

ଅକିଷ୍ଟକରଣ୍ୟ କର୍ମ ସ୍ୱର୍ଗର ଘାତକ ।
ଘାନଲେନେଁ ଦେବେ ନଷ୍ଟେ ଜନ୍ମ ସତ୍ୟ ॥

ସଞ୍ଜୟ ଉବାଚ ।

ଏବମୁକ୍ତ୍ୱା ହୃଷୀକେଶଂ ଗୁଡ଼ାକେଶଃ ପରନ୍ତପଃ ।
ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ ॥ ୯ ॥

ଏତେ କଥା ବୋଲି ହୃଷୀକେଶେ ଫାଲଗୁନ ।
ନ କରିବ ଯୁଦ୍ଧ ବୋଲି ହୋଇଲେ ମଉନ ॥

ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ ।
ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ ॥ ୧୦ ॥

ଏଥନ୍ତେ ଶୁଣନ୍ତୁ ଭାରତ । ଉଭୟ ସେନା ମଧ୍ୟସ୍ଥିତ ।
ବିଷଣ୍ଣ ବଦନ ଅର୍ଜୁନେ । ବୋଇଲେ ଶ୍ରୀମଧୁସୂଦନେ ॥

ଶ୍ରୀ ଭଗବାନୁବାଚ ।

ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ।
ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ ॥ ୧୧ ॥

ହେ ଅର୍ଜୁନ ବୋଲୁଅଛ କଥା ଜ୍ଞାନପର ।
ମାତ୍ର ବୋଲୁ ନାହିଁ ଜ୍ଞାନ କଥା ଅନୁସର ॥
ନ ଅଟନ୍ତି ଶୋଚନୀୟ ଯେଉଁ ବନ୍ଧୁଗଣ ।
ସେମାନଙ୍କ ପାଇଁ ଶୋକ କର ଅକାରଣ ॥
ମୃତ ବା ଜୀବିତ ବନ୍ଧୁମାନଙ୍କ ନିମନ୍ତେ ।
ଶୋଚନା କରନ୍ତି ନାହିଁ କଦାଚ ପଣ୍ଡିତେ ॥

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ ।
ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃ ପରମ୍ ॥ ୧୨ ॥

ଆମ୍ଭେ ତୁମ୍ଭେ ପୁଣି ଏହି ନରପତିଗଣ ।
ପୂର୍ବକାଳେ ସର୍ବ ଲୋକ ଥିଲେ ବି[illegible] ॥

ବର୍ତ୍ତମାନ ଅଛନ୍ତି ପୁଣି ଥିବେ ଭବିଷ୍ୟତେ ।
ଶୋଚନା କରୁଛ ତେବେ ବୋଲି କି ନିମନ୍ତେ ॥
ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା ।
ତଥା ଦେହାନ୍ତରପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ॥ ୧୩ ॥
କୌମାର ଯଉବନ ଜରା । ପ୍ରାପ୍ତ ଏ ଦେହ ପରମ୍ପରା ।
ଏକ ଅବସ୍ଥା ନାଶ ଯାଇ । ତାହେବ ପ୍ରାପତ ହୁଅଇ ॥
ତେସନେ ଏ ଦେହ ନାଶ ଗଲେ । ଆରେକ ଦେହ ପ୍ରାପ୍ତ ହେଲେ
ଏଥିକି କପାଇଁ ଶୋଚନା । ଜ୍ଞାନଏ ନୁହନ୍ତି ବିମନା ॥
ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣ ସୁଖଦୁଃଖଦାଃ ।
ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ ॥ ୧୪ ॥
ଶୀତ ଉଷ୍ଣ ସୁଖ ଦୁଃଖ ଦିଅନ୍ତି ଇନ୍ଦ୍ରିୟ ।
କେବେ ବା ଜନ୍ମଇ ଏହା କେବେ ପାଏ ଲୟ ॥
କପାଁ ଚିନ୍ତା କର କ୍ଷଣସ୍ଥାୟୀ ବିଷୟରେ ।
ସୋନ୍ଦମା କରନ୍ତି ନାହିଁ ଏକଥାକୁ ଧୀରେ ॥
ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।
ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ॥ ୧୫ ॥
ଏସମସ୍ତ ଯେମାନଙ୍କୁ ନ କରେ ବ୍ୟଥିତ ।
ସେହିମାନେ ମୁକ୍ତିଲାଭ ପାଇଁ ଉପଯୁକ୍ତ ॥
ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।
ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ ॥ ୧୬ ॥
ଅସତ ସ୍ୱଭାବ କେଭେ ସତ୍ୟର ଅଭାବ ।
ନ ହୁଅଇ କଦାଚିତ ଜାଣ ହେ ପାଣ୍ଡବ ॥
ଏହି ଦୁଇ ପରିଣାମ ତତ୍ତ୍ୱଦର୍ଶିମାନେ ।
ଦେଖିଛନ୍ତି ବିଶେଷରେ ଅଦ୍ଭୁତ ଜ୍ଞାନେ ॥

ଅବିନାଶି ତୁ ତଦ୍ବିଦ୍ଧି ଯେନ ସର୍ବମିଦଂ ତତମ୍ ।
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତ୍ତୁମର୍ହତି ॥ ୧୭ ॥

ଅବିନାଶୀ ଆତ୍ମା ଏହି ଶରୀର ମଧ୍ୟରେ ।
ସାକ୍ଷିରୂପେ ଅବସ୍ଥିତ ଥାଆନ୍ତି ନିରନ୍ତରେ ॥
ଦେହ ମଧ୍ୟସ୍ଥିତ ଆତ୍ମା ଅକ୍ଷୟସ୍ୱରୂପ ।
କେହି କରି ପାରେ ନାହିଁ ତାହାଙ୍କୁ ବିନାଶ ॥

ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।
ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍ୟୁଧ୍ୟସ୍ୱ ଭାରତ ॥ ୧୮ ॥

ତତ୍ତ୍ୱଦର୍ଶୀ ଜ୍ଞାନୀଗଣ କରନ୍ତି ବିଚାର ।
ଅନିତ୍ୟ ଅଟଇ ଏହି ଭୌତିକ ଶରୀର ॥
ଅବିନାଶୀ ଅପ୍ରମେୟ ଆତ୍ମା ଯେ ଅଟଇ ।
ଏକଥା ବିଚାରି ଯୁଦ୍ଧ କର ମନ ଦେଇ ॥

ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତଂ ।
ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ॥୧୯॥

ଜୀବାତ୍ମା କରଇ ନାଶ ଅପର ପ୍ରାଣୀକୁ ।
କିମ୍ବା ଆନ ଜଣେ ନାଶ କରେ ଜୀବାତ୍ମାକୁ ॥
ଏହି ଦୁଇ କଥା ଯେଉଁ ଲୋକ କରେ ବୋଧ ।
ନିଶ୍ଚୟ ଜାଣିବ ସେହି ଅଟଇ ଅବୋଧ ॥
ଜୀବାତ୍ମା ନ କରେ ବଧ କଦାଚ କାହାକୁ ।
କେହି କରି ନ ପାରଇ ବଧ ଜୀବାତ୍ମାକୁ ॥

ନ ଜାୟତେ ମ୍ରିୟତେ ବା କଦାଚିନ୍ନାୟଂ ଭୂତ୍ୱା ଭବିତା ବା ନ
ଭୂୟଃ । ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ନ ହନ୍ୟତେ
ହନ୍ୟମାନେ ଶରୀରେ ॥ ୨୦ ॥

ଜୀବାତ୍ମାର ନାହିଁ କେବେ ଜନମ ମରଣ ।

ବର୍ଦ୍ଧିତ ହୁଅଇ ନାହିଁ ମଧ୍ୟ ପୁଣଃ ପୁଣଃ
ଜନ୍ମହିନଠାରୁ ଏହା ଥାନ୍ତି ପ୍ରକାଶିତ ।
ନିତ୍ୟ ପୁଣି ବୃଦ୍ଧିରୂପ ବିକାର ରହିତ ॥
ଏହାଙ୍କର ପରିଣାମ ନାହିଁ କଦାଚିତ ।
ବିନଷ୍ଟ ହୁଅନ୍ତି ନାହିଁ ଦେହେ ଏହା ହତ ॥

ବେଦା ବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟଂ ।
କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କଂ ॥ ୨୧ ॥

ଅବିନାଶୀ ନିତ୍ୟ ଜନ୍ମ ପୁଣି ଯେ ଅବ୍ୟୟ ।
ଏହାଙ୍କର କଦାଚିତ ହୁଏ ନାହିଁ କ୍ଷୟ ॥
ଯେ ଲୋକ କରଇ ଏହି କଥାକୁ ବିଶ୍ୱାସ ।
କାହିଁକି କରିବ ବା କାହାକୁ ବିନାଶ ॥

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପ-
ରାଣି । ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି
ଦେହୀ ॥ ୨୨ ॥

ଯେମନ୍ତ ପୁରୁଣା ବସ୍ତ୍ର ତେଜି ଲୋକଗଣ ।
କରନ୍ତି ନୂତନ ବସ୍ତ୍ରଖଣ୍ଡ ପରିଧାନ ॥
ସେହିରୂପ ଜୀର୍ଣ୍ଣଦେହ ତେଜି ପରିହାର ।
ଗ୍ରହଣ କରନ୍ତି ଆତ୍ମା ନୂତନ ଶରୀର ॥

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ॥ ୨୩ ॥

ଶସ୍ତ୍ରେ ନ ହୁଅଇ ଛିନ୍ନ । ଅନଳେ ନ ହୁଏ ଦହନ ।
ଜଳରେ କେବେ ନ ପଚଇ । ବାୟୁ ଶୁଖାଇ ପାରେ ନାହିଁ ॥

ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଳେଦ୍ୟୋଽଶୋଷ୍ୟ ଏବଚ ।
ନିତ୍ୟ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନଃ ।

ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ ॥ ୨୪ ॥

ଅଚ୍ଛେଦ୍ୟ ଆତ୍ମା ନ ପୋଡ଼ଇ । ନ ପଚେ ପୁଣି ନ ଶୁଖଇ ।
ତେଣୁ ଯେ ନିତ୍ୟ ସର୍ବଗତ । ଅଚଳ ସ୍ୱଭାବ ସତତ ॥
ଅଚଳ ଅନାଦି ପ୍ରକାର । ଜ୍ଞାନ ଇନ୍ଦ୍ରିୟ ଅଗୋଚର ।
ମନର ଅଚିନ୍ତ୍ୟ ବିଷୟ । ଜାଣନ୍ତି ନାହିଁ କର୍ମେନ୍ଦ୍ରିୟ ॥

ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି ॥ ୨୫ ॥

ଏଣୁ ହେ ପାର୍ଥ ତୁମ୍ଭେ ଏହା କର ବିବେଚନା ।
ଆତ୍ମାର ନିମନ୍ତେ କେବେ ନ କର ଶୋଚନା ॥

ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତଂ ।
ତଥାପି ତ୍ୱଂ ମହାବାହୋ ନୈବଂ ଶୋଚିତୁମର୍ହସି ॥ ୨୬ ॥

ଯଦି ବୋଲ ଆତ୍ମା କରେ ଜନମ ଗ୍ରହଣ ।
କାଳକ୍ରମେ କାଳଗ୍ରାସେ ହୁଅଇ ପତନ ॥
ତେବେ ଯେବା ପୁଣ ପୁଣ ଜନମି ମରଇ ।
ହେ ଅର୍ଜୁନ ତାହା ପାଇଁ ଚିନ୍ତା କାହିଁ ପାଇଁ ॥

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ॥ ୨୭ ॥

ଯେ ଲୋକ ଲଭଇ ଜନ୍ମ ଅବଶ୍ୟ ସେ ମରେ ।
ମୃତଲୋକ ଦେହ କୃତଫଳ ଭୋଗ କରେ ।
ଯେଉଁ କଥା ନିଶ୍ଚେ ହେବ ନାହିଁ ନିବାରଣ ।
ତହିଁପାଇଁ ପାର୍ଥ ଚିନ୍ତା କର କି କାରଣ ॥

ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।
ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା ॥ ୨୮ ॥

ଉତ୍ପତ୍ତି ପୂର୍ବେ ହେ ଅର୍ଜୁନ । ଅବ୍ୟକ୍ତ ଥିଲେ ଭୂତଗଣ ।
ମଧ୍ୟରେ କେତେଦିନ ପାଇଁ । ଭୂତ ପୃଥ୍ୱୀରେ ସଞ୍ଚରଇ ॥

ବିନାଶ ସମୟରେ ପୁଣ । ଅବ୍ୟକ୍ତ ହେବେ ଭୂତଗଣ ।
ତେଣୁ ବୋଲୁଛୁଁ ହେ କୌନ୍ତେୟ । ନୋହେ ଏ ଚିନ୍ତାର ବିଷୟ ॥

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ ମାଶ୍ଚର୍ଯ୍ୟବଦ୍ବଦତି ତଥୈବ
ଚାନ୍ୟଃ । ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି ଶ୍ରୁତ୍ୱାପ୍ୟେନଂ
ବେଦ ନ ଚୈବ କଶ୍ଚିତ୍ ॥ ୨୯ ॥

କେହୁ କହେ ଜୀବାତ୍ମାକୁ ବସ୍ତୁଙ୍କ ଦର୍ଶନ ।
ଆଶ୍ଚର୍ଯ୍ୟ ସହିତ କେବା କରଇ ବର୍ଣ୍ଣନ ॥
କେହୁ ଜାଣି ଶୁଣି ସ୍ଥିର କର ନ ପାରଇ ।
ଆତ୍ମାଜ୍ଞାନ ହେବା କଥା ସହଜ ନୁହଇ ॥

ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ ।
ତସ୍ମାତ୍ ସର୍ବାଣି ଭୂତାନି ନତ୍ୱଂ ଶୋଚିତୁମର୍ହସି ॥ ୩୦ ॥

ଅବିନାଶୀ ରୂପେ ଆତ୍ମା ଦେହେ ବାସ କରେ ।
ତେଣୁ ତୁମ୍ଭେ ଅହେ ପାର୍ଥ ଚିନ୍ତ ଏ କିଆଁରେ ॥

ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି ।
ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ ॥ ୩୧ ॥

କ୍ଷତ୍ରିୟ ଧର୍ମକୁ ଯେବେ କର ଦୃଷ୍ଟିପାତ ।
ତେବେ ହେବ ନାହିଁ କେବେ ଭୀତ ବା କମ୍ପିତ ॥
କ୍ଷତ୍ରିୟମାନଙ୍କ ଯେଣୁ ନାହିଁ ଗତି ଆନ ।
ଧର୍ମଯୁଦ୍ଧ ବିନା ସ୍ୱର୍ଗ ଲଭର କାରଣ ॥

ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତଂ ।
ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶଂ ॥ ୩୨ ॥

ଆପଣା ଇଚ୍ଛାରେ ଉପସ୍ଥିତ କ୍ଷତ୍ରିମାନେ ।
ଅନାବୃତ ସ୍ୱର୍ଗଦ୍ୱାର ସମର ଅଙ୍ଗଣେ ॥
ଏମନ୍ତ ସମର ହୁଏ ଯେଉଁ ବୀର ପ୍ରାପ୍ତ ।

ଜଗତ ମଧ୍ୟରେ ସେହୁ ସୁଖୀ ଅଟେ ପାର୍ଥ ॥
ଅଥଚେତ୍ତ୍ୱମିମଂ ଧର୍ମ୍ୟଂ ସଙ୍ଗ୍ରାମଂ ନ କରିଷ୍ୟସି ।
ତତଃ ସ୍ୱଧର୍ମଂ କୀର୍ତ୍ତିଞ୍ଚ ହିତ୍ୱା ପାପମବାପ୍ସ୍ୟସି ॥୩୩॥
ଏ ଲଢ଼ାରେ ଯଦି ହେବ ଧର୍ମଯୁଦ୍ଧ ତ୍ୟାଗୀ ।
ଧର୍ମକୀର୍ତ୍ତି ତ୍ୟାଗ କରି ହେବ ପାପଭାଗୀ ॥
ଅକୀର୍ତ୍ତିଞ୍ଚାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍ ।
ସମ୍ଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ ॥୩୪॥
ହେବଟି ଜଗତେ ତୁମ୍ଭ ଅକୀର୍ତ୍ତି ରଚନା ।
ମୃତ୍ୟୁଠାରୁ ଅପଯଶ ବଡ଼ମ ଯନ୍ତ୍ରଣା ॥
ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।
ଯେଷାଞ୍ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବଂ ॥୩୫॥
ଗାବନ୍ତ ତୁମ୍ଭର ଯଶ ଯେଉଁ ମହାବୀରେ ।
ନ ରହିବ ତୁମ୍ଭ ମାନ ସେମାନଙ୍କଠାରେ ॥
ସେମାନେ ମନରେ ଏହା କରିବେ ବିଚାର ।
ଭୟ ଯୋଗୁଁ ଫାଲଗୁନ ନ କଲା ସମର ॥
ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ ।
ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିଂ ॥୩୬॥
ଗାଇବେ ଶତ୍ରୁଏ କେତେ ତୁମ୍ଭ ଅପଯଶ ।
ତୁମ୍ଭ ସାମର୍ଥ୍ୟକୁ ନିନ୍ଦା କରିବେ ଅବଶ୍ୟ ॥
ଏବେ ଫାଲଗୁନ ତୁମ୍ଭେ ମନରେ ବିଚାର ।
ଏହାଠାରୁ ତୁମ୍ଭ ପକ୍ଷେ କିବା ନିନ୍ଦାକର ॥
ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ ।
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟଃ ॥୩୭॥
ସଗ୍ରାମେ କରିବ ଯେବେ ତୁମ୍ଭେ ପ୍ରାଣ ତ୍ୟାଗ ॥

ଅବଶ୍ୟ କରବ ପରଲୋକେ ସ୍ୱର୍ଗଭୋଗ ॥
ଜୟୀ ହେଲେ ପୃଥ୍ୱୀଭୋଗ କରବ ନିଶ୍ଚିତ ।
ଅତଏବ ହୁଅ ହେତେ ସମରେ ପ୍ରସ୍ତୁତ ॥

ସୁଖ ଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ ।
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି ॥୩୮॥

ସୁଖଦୁଃଖ ଲାଭାଲାଭ ଜୟ ପରାଜୟ ।
ଏହି ସବୁ ତୁଲ୍ୟ ଜ୍ଞାନ କର ହେ କୌନ୍ତେୟ ॥
ଧର୍ମ୍ମତ ଯଦ୍ୟପି ହେବ ଯୁଦ୍ଧେ ଅନୁରାଗୀ ।
ତେବେ କଦାଚିତ ହେବ ନାହିଁ ପାପଭାଗୀ ॥

ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।
ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି ॥୩୯॥

ଯାହା ଯୋଗେ ହେବ ତୁମ୍ଭ ଆତ୍ମତତ୍ତ୍ୱଜ୍ଞାନ ।
ସେହି ସବୁ ତୁମ୍ଭଠାରେ କଲୁଁ ଯେ ବର୍ତ୍ତନ ॥
କର୍ମ ବିଷୟିଣୀ ବୁଦ୍ଧି ହୁଅ ଅବଗତ ।
ଯହିଁ ହେବ କର୍ମରୂପ ବନ୍ଧନୁ ମୁକତ ॥

ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ ।
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ॥୪୦॥

ନିଷ୍କାମ କର୍ମ ଅନୁଷ୍ଠାନ । ବିଫଳ ନ ହୁଏ ଅର୍ଜ୍ଜୁନ ।
ତହିଁରେ ନାହିଁ ମଧ୍ୟ ପାପ । ଯାହୁଁ ଉଦ୍ଧାରେ ପୁଣ୍ୟ ଅଳ୍ପ ।

ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ ।
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାଂ ॥୪୧॥

ନିଶ୍ଚୟ ଯୁକ୍ତ ଯେଉଁ ଜ୍ଞାନ । ସେ ଅଟେ ଏକ ହେ ଅର୍ଜ୍ଜୁନ ॥
ଯେ ନୋହେ ବ୍ୟବସାୟାତ୍ମିକା । ଅଟେ ଅସୀମ ବହୁଶାଖା ॥

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ ।

ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତିବାଦିନଃ ॥୪୨॥

ଆପାତ ଶ୍ରୁତ ସୁଖକର । ବାକ୍ୟରେ ଆସକ୍ତ ଯେ ନର ॥
ଫଳ ପ୍ରକାଶି ବେଦ ବାକ୍ୟ । ତହିଁ ଆସକ୍ତ ଯେଉଁ ଲୋକ ॥
ସ୍ୱର୍ଗ ସାଧନ କର୍ମ ବିନେ । ଭଣନ୍ତି ନାହିଁ ସେହିମାନେ ॥

କାମାତ୍ମାନଃ ସ୍ୱର୍ଗପରା ଜନ୍ମକର୍ମଫଳପ୍ରଦାଂ ।
କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି ॥୪୩॥

ଯେମାନଙ୍କ ଚିତ୍ତ କାମ ଲଭେ ଅଭିଭବ ।
ଯେଉଁ ଲୋକମାନଙ୍କର ସ୍ୱର୍ଗ ପୁରୁଷାର୍ଥ ॥
ଜନ୍ମ କର୍ମ ଫଳପ୍ରଦ ସୁଖ ଭୋଗମାନ ।
ଐଶ୍ୱର୍ଯ୍ୟ ଲାଭରେ ଯାହା ତାହାର ନିଦାନ ॥
ନାନା କ୍ରିୟା ପ୍ରକାଶକ ବାକ୍ୟେ ଅସକତ ।
ଯେମାନଙ୍କ ହୋଇଅଛି ମନ ଅପହୃତ ॥

ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ତୟାଽପହୃତଚେତସାଂ ।
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ ॥୪୪॥

ଭୋଗ ଐଶ୍ୱର୍ଯ୍ୟେ ଅନୁରକ୍ତ । ଯେମାନେ ଥାଆନ୍ତି ସତତ ॥
ସେ ମୂର୍ଖମାନଙ୍କର ବୁଦ୍ଧି । କଦାଚ ନ ଲଭେ ସମାଧି ॥

ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।
ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ୍ ॥୪୫॥

ସକାମ ବ୍ୟକ୍ତିମାନଙ୍କର । ବୈଦିକ ଧର୍ମ ଅଟେ ସାର ।
ହେ ପାର୍ଥ ହୋଇ ଧୈର୍ଯ୍ୟଶାଳୀ । ଶୀତୋଷ୍ଣ ସୁଖ ଦୁଃଖ ମେଳି ॥
ସର୍ବେଣ ଅନାସକ୍ତ ଚିତ୍ତେ । ଯୋଗ କ୍ଷେମର ବିପରୀତେ ।
ତୁମ୍ଭେ ଯେ ଏବେ ଅପ୍ରମାଦେ । ନିଷ୍କାମ ଧର୍ମ ଚିନ୍ତ ହୃଦେ ॥

ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ॥୪୬॥

କୂପ ତଡ଼ାଗ ଜଳାଶୟେ । ଯେତେକ କାର୍ଯ୍ୟ ସିଦ୍ଧ ହୁଏ ।
ଏକ ହ୍ରଦରୁ ଲଭ ତାହା । ଏଥୁଁ ଜାଣିବ ମହାବାହା ॥
ସମସ୍ତ ବେଦ ଅନ୍ତର୍ଗତ । ଯେ କର୍ମ ଫଳହିଁ ବର୍ଣ୍ଣିତ ।
ସନ୍ଦେହ ରହିତ ବ୍ରାହ୍ମଣ । ଏକ ବ୍ରହ୍ମରୁ ପାଏ ଜ୍ଞାନ ॥
କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।
ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି ॥୪୭॥
ତତ୍ତ୍ୱଜ୍ଞାନାର୍ଥୀ ହୁଅ ବୀର । କର୍ମରେ ଜନ୍ମ ଅଧିକାର ।
ନ ଯାଉ କର୍ମ ଫଳେ ମତି । ନ ବଢ଼ୁ ତହିଁରେ ପ୍ରବୃତ୍ତି ।
ଆତ୍ମର ବାଞ୍ଛା ହେ ଅର୍ଜୁନ । କର୍ମରେ ଥାଉ ତୁମ୍ଭ ମନ ॥
ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।
ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ॥୪୮॥
ହେ ପାର୍ଥ ତେଜଣ ଆସକ୍ତି । ଈଶ୍ୱର ପଦେ ଦିଅ ମତି ॥
ସିଦ୍ଧି ଅସିଦ୍ଧି ଫଳ ବେନି । ସମାନ ମଣି ଫାଲଗୁନି ॥
କର୍ମାଦ କର ଅନୁଷ୍ଠାନ । ଏହା ବୋଲନ୍ତି ଜ୍ଞାନଗଣ ॥
ସିଦ୍ଧି ଅସିଦ୍ଧି ତୁଲ୍ୟ ଜ୍ଞାନ । ଅଟଇ ଯୋଗର ନିଦାନ ॥
ଦୂରେଣ ହ୍ୟବରଂ କର୍ମ ବୁଦ୍ଧି ଯୋଗାଦ୍ଧନଞ୍ଜୟ ।
ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣା ଫଳହେତବଃ ॥୪୯॥
କାମ୍ୟ କର୍ମମାନ ଅତଶୟ ଅପକୃଷ୍ଟ ।
ଫଣସ୍ୟ ରହିତ ବୁଦ୍ଧି ଯୋଗେ କର୍ମ ଶ୍ରେଷ୍ଠ ॥
ଅତଏବ କର କର୍ମ ଯୋଗ ଅନୁଷ୍ଠାନ ।
ସକାମ ମନୁଷ୍ୟମାନେ ଅଟନ୍ତି ଯେ ହୀନ ॥
ବୁଦ୍ଧିଯୁକ୍ତୋଜହାତୀହ ଉଭେ ସୁକୃତଦୁଷ୍କୃତେ ।
ତସ୍ମାତ୍ ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଳଂ ॥୫୦॥
କର୍ମ ଯୋଗ ବଷୟିଣୀ ବୁଦ୍ଧି ଅଛୁ ଯାର ।

ସୁକୃତ ଦୁଷ୍କୃତ ଦୂର କରେ ପରୁଦ୍ଧାର ॥
ହେ ପାର୍ଥ ସଚେଷ୍ଟ ହୁଅ କର୍ମ ଯୋଗ ପାଇଁ ।
ଆରାଧନା ଯୋଗେ ମୋକ୍ଷ ଯୋଗ ଯେ ଅଟଇ ॥

କର୍ମଜଂ ବୁଦ୍ଧିଯୁକ୍ତାହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ ।
ଜନ୍ମବନ୍ଧବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟଂ ॥୫୧॥

କର୍ମଜ ଫଳ ତ୍ୟାଗ କର । କେବଳ କର୍ମ ଅନୁସର ।
ଜ୍ଞାନଏ ପାଶୁଁ ହୋଇ ମୁକ୍ତ । ହୁଅନ୍ତି ମୋକ୍ଷ ପଦ ପ୍ରାପ୍ତ ॥

ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।
ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥୫୨॥

ଭ୍ରମର ବୁଝି ଯେବେ ପାର୍ଥ । ଗହନ ମୋହୁଁ ହେବ ମୁକ୍ତ ।
ଶ୍ରୋତବ୍ୟ ଶ୍ରୁତ ଏ ଉଭୟେ । ବୈରାଗ୍ୟ ଜନ୍ମିବ ନିଶ୍ଚୟେ ॥
ଏଥିରେ କରିବା ପ୍ରଯତ୍ନ । କିଛିହିଁ ନାହିଁ ପ୍ରୟୋଜନ ॥

ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି ॥୫୩॥

ଲୌକିକ ବୈଦିକ ନାନା କଥା ଶୁଣିବାରୁ ।
ହେ ପାର୍ଥ ଚଞ୍ଚଳ କପଟ କରୁଛ ମନକୁ ॥
ସ୍ଥିର ଚିତ୍ତେ କର ଯେବେ ପ୍ରଭୁ ପଦ ଧ୍ୟାନ ।
ଅବଶ୍ୟ କରିବ ଲାଭ ତେବେ ତତ୍ତ୍ୱଜ୍ଞାନ ॥

ଅର୍ଜୁନ ଉବାଚ ।

ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିଂ ॥୫୪॥

ପୁଚ୍ଛି କଲେ ଫାଲ୍‌ଗୁନ ବୋଲି ଭଗବାନ ।
ସ୍ଥିତପ୍ରଜ୍ଞ ଲୋକଙ୍କର କେମନ୍ତ ଲକ୍ଷଣ ॥
କେମନ୍ତ ତାହାଙ୍କ ବାକ୍ୟ କାହିଁ ଅବସ୍ଥିତ ।

ପୁଣି ସେହି ଲୋକଙ୍କର କେଉଁଠାକୁ ଗତି ॥

ଶ୍ରୀଭଗବାନୁବାଚ ।

ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍ ।
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ॥୫୫॥

ସର୍ବପ୍ରକାର ମନୋଗତ । ବାସନା ତେଜନ୍ତି ସେ ପାର୍ଥ ।
ଯା ଆତ୍ମା ନିଜେ ପରିତୁଷ୍ଟ । ସେ ସ୍ଥିତପ୍ରଜ୍ଞରେ ଉତ୍କୃଷ୍ଟ ॥

ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ ।
ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ ॥୫୬॥

ଯେ ଲୋକେ ଦୁଃଖରେ କାତର । ସୁଖକୁ ନ କରେ ଆଦର ।
ଭୟ କ୍ରୋଧରେ ନୁହେ ବଶ । ସେ ସ୍ଥିତପ୍ରଜ୍ଞ ଯେ ଅବଶ୍ୟ ॥

ଯଃ ସର୍ବତ୍ରାନଭିସ୍ନେହ ସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭଂ ।
ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥୫୭॥

ପୁତ୍ର ମିତ୍ର ଲୋକପ୍ରତି ଯେବା ସ୍ନେହହୀନ ।
କୁଶଳ କଥାରେ ନୁହେ ଆନନ୍ଦିତ ମନ ॥
ପ୍ରତିକୂଳ ବିଷୟକୁ ନିନ୍ଦା ଯେ ନ କରେ ।
ସେହି ଲୋକ ସ୍ଥିତପ୍ରଜ୍ଞ ଜାଣ ପୃଥିବୀରେ ॥

ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥୫୮॥

ନିଜ ଅଙ୍ଗକୁ କୂର୍ମ ଯେତେ । ସଙ୍କୋଚ କରେ କ୍ଳେଶବେଳେ ।
ତେବେ ବିଷୟୁଁ ଇନ୍ଦ୍ରିଗଣ । ଯେ ଲୋକ କରେ ସମ୍ବରଣ ॥
ତା ଜ୍ଞାନ ଅଚଳ ହେ ପାର୍ଥ । ସେ ସ୍ଥିତପ୍ରଜ୍ଞରେ ବିଖ୍ୟାତ ॥

ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ ।
ରସବର୍ଜ୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ ॥୫୯॥

ଇନ୍ଦ୍ରିୟମାନଙ୍କ ଯୋଗେ ବିଷୟ ଗ୍ରହଣ ।

କରି ନ ପାରଇ ସହଜରେ ଯେଉଁ ଜନ ॥
ସେହି ଦେହ ପଡ଼ିମାନ ଅଙ୍ଗ ସ୍ୱଭାବରେ ।
ଜବାଡ ବିଷୟ ବୋଧ କରି ଯେ ନ ପାରେ ॥
ସେମାନଙ୍କ ଅଭିଳାଷ ନୁହଇ ନବୃତ୍ତ ।
ସ୍ଥିତପ୍ରଜ୍ଞ ସହଜରେ ହୁଅଇ ମୁକତ ॥

ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ ।
ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ ॥୬୦॥

ଜାଣିବେ ପାର୍ଥ କ୍ଷୋଭଦାୟୀ ଇନ୍ଦ୍ରିୟ ସକଳ ।
ମୋକ୍ଷାର୍ଥୀମାନଙ୍କ ମନ କରଇ ଚଞ୍ଚଳ ॥
ଏଣୁ ସାବଧାନ ହୋଇଥିବ ଯେ ବିବେକ ।
ସେମାନେ ସ୍ୱଭାବେ ଯେଣୁ ବିକ୍ଷେପ କାରକ ॥

ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ ।
ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥୬୧॥

ଇନ୍ଦ୍ରିୟ ବଶ ଯେ କଲେକର । ନିଷ୍ଠଳା ପ୍ରଜ୍ଞା ଯେ ତାହାର ॥
ନିଶ୍ଚୟ ଜାଣିବ ଅର୍ଜ୍ଜୁନ । ସ୍ଥିତପ୍ରଜ୍ଞ ଯେ ସେହି ଜନ ॥

ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।
ସଙ୍ଗାତ୍ ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ॥୬୨॥

ବିଷୟୀ ପୁରୁଷର ମତ । ବିଷୟେ ଜନ୍ମଇ ଆସକ୍ତି ।
ଆସକ୍ତି ଠାରୁ ଅଭିଳାଷ । ଏଥିରୁ କ୍ରୋଧ ଯେ ବିଶେଷ ॥

କ୍ରୋଧାଦ୍ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ॥୬୩॥

କ୍ରୋଧରୁ ହୁଏ ମୋହ ଜାତ । ମୋହରୁ ହୁଏ ସ୍ମୃତିଭ୍ରାନ୍ତ ।
ସ୍ମୃତି ବିଭ୍ରମୁ ବୁଦ୍ଧି ନାଶ । ବୁଦ୍ଧି ନାଶରୁ ସର୍ବ ଧ୍ୱଂସ ॥

ରାଗଦ୍ୱେଷବିଯୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍ ।

ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି ॥୬୪॥
ଆତ୍ମା ବଶୀଭୂତଜାଣ ଲୋକ ସଂସାରରେ ।
ରାଗ ଦ୍ୱେଷ ଶୂନ୍ୟ ବଶୀଭୂତ ଇନ୍ଦ୍ରିୟରେ ॥
ବିଷୟକୁ ଉପଭୋଗ କରନ୍ତି ସେହି ।
ସେତ ସଂସାରରେ ଆତ୍ମପ୍ରସାଦ ଲଭଇ ॥
ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।
ପ୍ରସନ୍ନଚେତସୋ ହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ॥୬୫॥
ହେଲେ ଶାନ୍ତି ପ୍ରାପ୍ତ ସର୍ବ ଦୁଃଖ ହୁଏ ନାଶ ।
ଯେଣୁ ତାହା ବୁଦ୍ଧି ହୁଏ ଆତ୍ମାରେ ନିବେଶ ॥
ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖଂ ॥୬୬॥
ଅଜିତେନ୍ଦ୍ରିୟ ଯେଉଁ ନର । ଭାବନା ହେବ କାହୁଁ ତାର ॥
ଚିନ୍ତା ନ କଲେ କାହୁଁ ଶାନ୍ତି । ଶାନ୍ତି ବିହୀନେ ନାହିଁ ମୁକ୍ତି ॥
ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁବିଧୀୟତେ ।
ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି ॥୬୭॥
[illegible] ଯେଉଁ ମନ । ପୁଣି ସେ ଇନ୍ଦ୍ରିୟ ଅଧୀନ ॥
ଯେମନ୍ତ ସମୁଦ୍ର ମଧ୍ୟରେ । ଘୂର୍ଣ୍ଣିତ ପ୍ରବଳ ବାତରେ ।
[illegible] ନାବିକ ଅଧୀନ । ସେମନ୍ତେ ନାବ ଜଳ ମଗ୍ନ ॥
ତେମନ୍ତ ସେ ମଗ୍ନ କରଇ । ପ୍ରଜ୍ଞା ତାଙ୍କୁ ବିପଦେ ॥
ତସ୍ମାଦ୍ୟସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥୬୮॥
ଇନ୍ଦ୍ରିୟ ସମସ୍ତଂ ନିବୃତ୍ତ । କରଣେ ଯେବା ଧର୍ମରଥ ।
[illegible] ତାର ଜାଣ । ସେ ସ୍ଥିତପ୍ରଜ୍ଞ ମହାଜ୍ଞାନ ॥
ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।

ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ॥୬୯॥
ଭୂତମାନଙ୍କ ଯେଉଁ ରାତି । ଜ୍ଞାନଏ ଦିବସ ମଣନ୍ତି ।
ଭୂତମାନଙ୍କ ଯେଉଁ ଦିବା । ଜ୍ଞାନିଙ୍କ ରଜନୀ ଜାଣିବା* ॥
ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍ୱତ୍ ।
ତଦ୍ୱତ୍କାମା ଯଂ ପ୍ରବିଶନ୍ତି ସର୍ବେ ସ ଶାନ୍ତିମାପ୍ନୋତି ନ କାମକାମୀ ॥
ଯେମନ୍ତ ସକଳ ସରିତ । ସାଗରେ ହୁଅନ୍ତି ପତିତ ।
ତେମନ୍ତେ ଭୋଗେଚ୍ଛା ସମୂହ । ଯାହାକୁ କରନ୍ତି ଆଶ୍ରୟ ॥
ଧନ୍ୟ ସେ ଲୋକ ଏ ସଂସାରେ । ନିଶ୍ଚୟ ମୁକ୍ତି ଲାଭ କରେ ॥
ଭୋଗାଭିଳାଷୀ ଯେଉଁ ବ୍ୟକ୍ତି । କେବେ ସେ ନ ପାଏ ମୁକତି ॥
ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିଃସ୍ପୃହଃ ।
ନିର୍ମମୋ ନିରହଙ୍କାରଃ ସ ଶାନ୍ତିମଧିଗଚ୍ଛତି ॥

ଅଭିଳାଷ ବସ୍ତୁମାନ ପରିତ୍ୟାଗ କରି ।
ସ୍ପୃହାହୀନ ପୁଣି ଯେବା ନୋହେ ଅହଙ୍କାରୀ ।
ପୁଣି ଯେ ମମତା ଶୂନ୍ୟ ହୋଇ ମହାଭାଗ ।
ଭୋଗ୍ୟ ବସ୍ତୁ ସମୁଦାୟ କରେ ଉପଭୋଗ ।
ନିଶ୍ଚୟ ଜାଣିବ ତୁମ୍ଭେ ଅଟେ ବୀର ପାର୍ଥ ।
ସେହି ଲୋକ ମୁକ୍ତି ଲଭେ ହେବ ସମରଥ ॥

ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।
ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି ॥୭୨॥
ଅଟେ ପାର୍ଥ ବ୍ରହ୍ମଜ୍ଞାନ ନିଷ୍ଠା ଏହିପରି ।

---

* ଭୂତମାନେ ଅଜ୍ଞାନରୂପ ଅନ୍ଧକାରରେ ଆଚ୍ଛନ୍ନ ଥିବା ସମୟରେ ସଂଯମିମାନେ ବ୍ରହ୍ମନିଷ୍ଠାରୂପ ଆଲୋକରେ ଜାଗରିତ ଥାଆନ୍ତି । ଭୂତମାନଙ୍କର ବିଷୟଭୋଗ ସମୟରୂପ ଯେଉଁ ଦିବା, ଜ୍ଞାନିଙ୍କ ପକ୍ଷରେ ତାହା ରାତ୍ରି ଅଟେ ।

ଯେ ଜାଣେ ଏ ଜ୍ଞାନ ଯାଏ ଭବଜଳୁଁ ତରି ॥
କ୍ଷଣମାତ୍ର ଲଭେ ଯେବେ ଅନ୍ତିମ କାଳରେ ।
ପରବ୍ରହ୍ମେ ଲୀନ ସେହି ହୁଏ ସହଜରେ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ସାଂଖ୍ୟଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

## ତୃତୀୟୋଽଧ୍ୟାୟଃ ।

ଅର୍ଜ୍ଜୁନ ଉବାଚ ।

ଜ୍ୟାୟସୀ ଚେତ୍ କର୍ମ୍ମଣସ୍ତେ ମତା ବୁଦ୍ଧିର୍ଜ୍ଜନାର୍ଦ୍ଦନ ।
ତତ୍ କିଂ କର୍ମ୍ମଣି ଘୋରେ ମାଂ ନିୟୋଜୟସି କେଶବ ॥୧॥

କର୍ମଠାରୁ ଜ୍ଞାନ ଶ୍ରେଷ୍ଠ ଏହା ଯେବେ ଜାଣ ।
ତେବେ କାହିଁପାଇଁ ମୋତେ [illegible] ଜନାର୍ଦ୍ଦନ ॥
ସେହି ଭୟଙ୍କର କର୍ମେ କରୁଛ ନିଯୁକ୍ତ ।
କୃପା କରି ବୋଲ ମୋତେ ଏଥିର ଯୁକତ ॥

ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ ।
ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାଂ ॥୨॥

ଜ୍ଞାନର ପ୍ରଶଂସା ତୁମ୍ଭେ କେବେ ବା କରୁଛ ।
କର୍ମ ଶ୍ରେଷ୍ଠ ବୋଲି ପୁଣି କେବେ ବା କହୁଛ ॥
ଏଥିରେ ହୋଇଛି ମୋର ଜ୍ଞାନ ବିମୋହିତ ।
ନିଶ୍ଚିତ ବୋଲନ୍ତୁ ଯାହା ମୋର ପକ୍ଷେ ହିତ ॥

ଶ୍ରୀଭଗବାନୁବାଚ ।

ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାଽନଘ ।

ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାଂ ॥୩॥
ପୂର୍ବେ ବୋଲିଅଛୁଁ ବ୍ରହ୍ମନିଷ୍ଠା ଦୁଇ ରୂପ ।
ସମ୍ପ୍ରତି ବୋଲୁଛୁଁ ଶୁଣ ତହିଁର ସ୍ୱରୂପ ।
ଶୁଦ୍ଧ ଚେତାମାନଙ୍କର ଅଟେ ଜ୍ଞାନ ଯୋଗ ।
ଯୋଗିମାନଙ୍କର ପୁଣି ଅଟେ କର୍ମ ଯୋଗ ॥

ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।
ନ ଚ ସନ୍ନ୍ୟାସନାଦେବ ସିଦ୍ଧିଂ ସମଧିଗଚ୍ଛତି ॥୪॥
ପୁରୁଷ ନ କରେ ଯେବେ କର୍ମ ଅନୁଷ୍ଠାନ ।
କେବେ ପ୍ରାପ୍ତ ହୋଇ ପାରେ ନାହିଁ ତତ୍ତ୍ୱଜ୍ଞାନ ॥
ଜ୍ଞାନଯୋଗ ବିନା କେବଳ ଯେ ସନ୍ନ୍ୟାସରେ ।
ସିଦ୍ଧିଲାଭ ହେବ ନାହିଁ ଘେନ ହେ ମନରେ ॥

ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମ୍ମକୃତ୍ ।
କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ ॥୫॥
ପୁରୁଷ ନ କରି କେବେ କର୍ମ ଅନୁଷ୍ଠାନ ।
ଦଣ୍ଡେ ମାତ୍ର କରି ନ ପାରଇ ଅବସ୍ଥାନ ॥
ଇଚ୍ଛା ନ କଲେହେଁ ଲୋକ ପ୍ରକୃତି ଗୁଣରେ ।
କର୍ମରେ ନିଯୁକ୍ତ ହୋଇଥାନ୍ତି ନିରନ୍ତରେ ॥

କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍ ।
ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ ॥୬॥
ଯେଉଁ ଲୋକ ସଂଯମନ କରି କର୍ମେନ୍ଦ୍ରିୟ ।
ମନ ମଧ୍ୟେ ଚିନ୍ତା କରେ ଇନ୍ଦ୍ରିୟ ବିଷୟ ॥
ମୂଢ଼ାତ୍ମା କପଟସ୍ୱୀ ବୋଲି ତାକୁ ଜାଣ ।
ସର୍ବଦା କରନ୍ତି ନିନ୍ଦା ତାକୁ ସାଧୁଜନ ॥

ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ ।
କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ ॥୭॥

ସେବା ଭଜ ଜ୍ଞାନେନ୍ଦ୍ରିୟଗଣେ ବଶୀଭୂତ ।
ଫଳ ଅଭିଳାଷ ତ୍ୟାଗ କରଣ ସତତ ॥
କର୍ମେନ୍ଦ୍ରିୟଦ୍ୱାରା କରେ କର୍ମ ଅନୁଷ୍ଠାନ ।
ସେହି ଲୋକ ଶ୍ରେଷ୍ଠ ବୋଲି ଜାଣ ହେ ଅର୍ଜୁନ ।

ନିୟତଂ କୁରୁ କର୍ମତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ ।
ଶରୀର ଯାତ୍ରାଽପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ॥୮॥

ଅତଏବ କର ତୁମ୍ଭେ କର୍ମ ଅନୁଷ୍ଠାନ ।
କର୍ମାଭାବ ଦେହଯାତ୍ରା ଅନିଷ୍ଟ କାରଣ ॥

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ॥୯॥

ଯଜ୍ଞାର୍ଥେ ନ ହୁଏ ଯେବେ କର୍ମ ଅନୁଷ୍ଠାନ ।
ତ୍ୟାଗ କରଥାନ୍ତି ଲୋକ ଯେ କର୍ମ ବନ୍ଧନ ॥
ଅତଏବ ହେ କୌନ୍ତେୟ ବିଷ୍ଣୁ ଉଦ୍ଦେଶ୍ୟରେ ।
ଅନୁଷ୍ଠାନ କର କର୍ମ ନିଷ୍କାମ ଭାବରେ ॥

ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱମେଷବୋଽସ୍ତ୍ୱିଷ୍ଟକାମଧୁକ୍ ॥୧୦॥

ପୂର୍ବେ ପ୍ରଜାପତି ଯେବେ କଲେ ପ୍ରଜା ସୃଷ୍ଟି ।
ସେମାନଙ୍କୁ ଆଜ୍ଞା ଦେଇଥିଲେ ପରମେଷ୍ଠି ॥
ତୁମ୍ଭେମାନେ ହେବ ଯଜ୍ଞେ ବର୍ଦ୍ଧିତ କ୍ରମଶଃ ।
ପୂର୍ଣ୍ଣ ହେବ ସମସ୍ତଙ୍କ ଯଜ୍ଞେ ଅଭିଳାଷ ॥

ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ ।
ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ ॥୧୧॥

ଦେବତାମାନଙ୍କୁ କର ଯଜ୍ଞେ ଆନନ୍ଦିତ ।
କରନ୍ତୁ ସେ ଦେବେ ତୁମ୍ଭମାନଙ୍କୁ ବର୍ଦ୍ଧିତ ॥

ଏକଲୁ ଗୁଣରେକ ନର କଲ୍ୟାଣ ବର୍ଦ୍ଧନ ।
ପୂର୍ବେ ଏହା ବୋଲିଛନ୍ତି ମନ୍ତ୍ରଳ ବାଦନ ॥

ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ ।
ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ ॥୧୨॥

ବର୍ଦ୍ଧିତ ହୋଇ ଦେବଗଣ । ସ୍ୱଅଳ କମନେ ପ୍ରଦାନ ।
ଯେ ଫଳ ଭୋଗ ଯେ କରଇ । ଦେବତାମାନଙ୍କୁ ନ ଦେଇ ॥
ନ କଲା ପ୍ରତିଉପକାର । ତେଣୁ ସେ ଲୋକ ଅଟଇ ଚୋର ।

ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ ।
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ॥୧୩॥

ଯଜ୍ଞ ଅବଶିଷ୍ଟ ସାଧୁ କରନ୍ତି ଭୋଜନ ।
ସର୍ବଂଭୂଧ ପାପ ପାଶ କରନ୍ତି ଛେଦନ ॥
କେବଳ ଆପଣା ପାଇଁ କରେ ଯେତେ ପାକ ।
ମହାପାପ ଫଳ ନଷ୍ଟେ ଭୁଞ୍ଜେ ସେହି ଲୋକ ॥

ଅନ୍ନାଦ୍ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ ।
ଯଜ୍ଞାଦ୍ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ ॥୧୪॥

ଅନ୍ନଠାରୁ ପ୍ରାଣିଗଣ ହୋଇଛନ୍ତି ଜାତ ।
ସେହି ପ୍ରାଣି ପ୍ରାଣ ଅନ୍ନ ପର୍ଜନ୍ୟ ସମ୍ଭୂତ ॥
ଯଜ୍ଞରୁ ହୋଇଛି ପୁଣି ଉତ୍ପତ୍ତି ପର୍ଜନ୍ୟ ।
ମାତ୍ର କର୍ମ ଅଟେ ସେହି ଯଜ୍ଞର ନିଦାନ ॥

କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ୍ ।
ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ॥୧୫॥

କର୍ମ ଯେ ବେଦର ପ୍ରସୂତି । ସେ ବେଦବ୍ରହ୍ମରୁ ଉତ୍ପତ୍ତି ॥
ଏଥିଲୁ ବ୍ରହ୍ମ ଯେ ସତତ । ଯଜ୍ଞରେ ଥାନ୍ତି ପ୍ରତିଷ୍ଠିତ ।

ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ ।

ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି ॥୧୬॥
ଯଜ୍ଞାଦି କର୍ମ ଅନୁଷ୍ଠାନ । ତାହାକୁ କର୍ମଚକ୍ର ଜାଣ ।
ଯେ ଲୋକ ହୋଇ ପାପମତି । ନ ହୁଏ ଏହାଙ୍କ ଅନୁବର୍ତ୍ତୀ
ପାପାତ୍ମା ବୋଲି ତାକୁ ଜାଣ । ବ୍ୟର୍ଥ ହୁଅଇ ତା ଜୀବନ ॥
ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ॥୧୭॥
ଆତ୍ମାରେ ଯେ ଲୋକର ପ୍ରୀତି । ଆତ୍ମାରେ ଆନନ୍ଦ ଯା ମତି
ଆତ୍ମାରେ ଯାହାର ସନ୍ତୋଷ । କର୍ମେ ତା ପ୍ରୟୋଜନ ନାଶ ॥
ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ ।
ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ ॥୧୮॥
କଲେ ସେ କର୍ମ ଅନୁଷ୍ଠାନ । ନୁହଇ ବନ୍ଧ ତାର ପୁଣ୍ୟ ॥
ଅଥବା କଲେ କର୍ମ ତ୍ୟାଗ । ନ ଭଞ୍ଜେ କିନ୍ତୁ ପାପଭୋଗ ॥
ସେ ଲୋକ ମୋକ୍ଷ ଲାଭ ପାଇଁ । କଦାଚ ବ୍ୟାକୁଳ ନୁହଇ ॥
ବ୍ରହ୍ମା ଅବଧି ଯେ ସ୍ଥାବର । ଆଶ୍ରୟ ନ ଲୋଡ଼େ କାହାର ॥
ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର ।
ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ ॥୧୯॥
ଅସକ୍ତି ଚିତ୍ତ ଯେଉଁ ଜନ । କରଇ କର୍ମ ଅନୁଷ୍ଠାନ ॥
ସେ ଲୋକ ମୋକ୍ଷକୁ ଲଭଇ । ତେଣୁ ହେ ପାର୍ଥ ମନ ଦେଇ
ନିଷ୍କାମ ହୋଇଣ ପ୍ରତିଦିନ । କର ହେ କର୍ମ ଅନୁଷ୍ଠାନ ॥
କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ ।
ଲୋକସଂଗ୍ରହମେବାପି ସମ୍ପଶ୍ୟନ୍ କର୍ତ୍ତୁମର୍ହସି ॥୨୦॥
ଜନକ ପ୍ରଭୃତି ପୂର୍ବାପୂର୍ବ ଜ୍ଞାନୀଗଣ ।
କର୍ମ ଯୋଗେ କରିଥିଲେ ଜ୍ଞାନ ଉପାର୍ଜ୍ଜନ ॥
ଅତଏବ ମନୁଷ୍ୟଙ୍କ ସ୍ୱଧର୍ମ ପ୍ରବୃତ୍ତ ।

କର୍ମ ଅନୁଷ୍ଠାନେ ତୁମ୍ଭେ ବଳାଅ ଯେ ମତି ।
ଉଚିତ ନୁହଇ କେବେ କର୍ମ ପରିତ୍ୟାଗ ।
କର୍ମ ଅନୁଷ୍ଠାନେ ତେଣୁ କର ମନୋଯୋଗ ॥
ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥୨୧॥
କରନ୍ତି ଉତ୍କୃଷ୍ଟ ଲୋକେ ଯାହା ଆଚରଣ ।
ଇତରେ କରନ୍ତି ସେହି କର୍ମ ଅନୁଷ୍ଠାନ ।
ଉତ୍କୃଷ୍ଟେ ପ୍ରମାଣ ବୋଲି ଯାହାକୁ ଗଣନ୍ତି ।
ସେହି କର୍ମ ଅନୁବର୍ତ୍ତୀ ଇତରେ ହୁଅନ୍ତି ॥
ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।
ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି ॥୨୨॥
~~ଆମ୍ଭର ଅପ୍ରାପ୍ୟ ବସ୍ତୁ ନାହିଁ ତ୍ରିଲୋକରେ ।~~
ଏଥିଲୁ କର୍ତ୍ତବ୍ୟ ବସ୍ତୁ ନାହିଁ ସହଜରେ ॥
ତଥାପି ଦେଖୁଛ ତୁମ୍ଭେ ଆମ୍ଭେ ଫାଲ୍ଗୁନ ।
ସର୍ବଦା କରୁଛୁଁ ଆମ୍ଭେ କର୍ମ ଅନୁଷ୍ଠାନ ॥
ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥୨୩॥
ନ କରୁଁ ଯେବେ ଆମ୍ଭେ କର୍ମ ଅନୁଷ୍ଠାନ ।
ନ କରିବେ ତେବେ କେହି କର୍ମ ଆଚରଣ ॥
ଆମ୍ଭର ପାର୍ଥ ଯେଣୁ ଲୋକ ସକଳ ସଂସାରେ ।
ଚଳନ୍ତି ନିଶ୍ଚିତ ଆମ୍ଭ ମତ ଦୃଷ୍ଟାନ୍ତରେ ॥
ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହଂ ।
ସଙ୍କରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ ॥୨୪॥
ପୁଣି ଯେବେ ନ କରୁଁ କର୍ମ ଅନୁଷ୍ଠାନ ।

ନଷ୍ଟହୁଁ ହେବେଟି ଲୋକ ସକଳ ଉଦ୍ଧନ ॥
ହେବେ ଏଥେ ପ୍ରଜା ବର୍ଣ୍ଣସଙ୍କର ସମ୍ଭୂତ ।
ହେବୁଁ ସେମାନଙ୍କ ମଳିନତା ହେତୁଭୂତ ॥

ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ ।
କୁର୍ଯ୍ୟାଦ୍ୱିଦ୍ୱାଂସ୍ତଥାଽସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହଂ ॥୨୫॥

ଯେମନ୍ତ ଅଜ୍ଞାନେ ଫଳ ପ୍ରତି ଆଶା କରି ।
ତାହାଙ୍କ ଆପଣା କର୍ମ ଥାନ୍ତି ଅନୁସରି ॥
ସେହିରୂପ ପୃଥିବୀରେ ଜ୍ଞାନୀ ଲୋକଗଣ ।
କରନ୍ତୁ ତାହାସକ୍ତି ତେଜି କର୍ମ ଅନୁଷ୍ଠାନ ॥

ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାଂ ।
ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ॥୨୬॥

କର୍ମାସକ୍ତ ମୂର୍ଖମାନଙ୍କର ବୁଦ୍ଧି ନାଶ ।
ତହିଁରେ କରିବେ ନାହିଁ ଜ୍ଞାନୀଏ ଅବଶ୍ୟ ॥
ଜ୍ଞାନୀଗଣ ନାନାରୂପ କର୍ମ ଅଯୋଜନେ ।
ଶିକ୍ଷା ଦେବେ ମୂର୍ଖଗଣେ କର୍ମ ଅନୁଷ୍ଠାନେ ॥

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।
ଅହଙ୍କାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ॥୨୭॥

ପ୍ରକୃତି ଗୁଣରେ ହେଉଥାନ୍ତି କର୍ମମାନ ।
ଅବୋଧେ ବୋଲନ୍ତି ଅମ୍ଭେ କଲୁଁ ଅନୁଷ୍ଠାନ ॥

ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ ।
ଗୁଣାଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ ॥୨୮॥

ଦୁଃଅନ୍ତ ଇନ୍ଦ୍ରିୟଗଣ ବିଷୟେ ପ୍ରବୃତ୍ତ ।
ତତ୍ତ୍ୱଜ୍ଞାନୀ ଲୋକେ ଏଥି ହୋଇ ଅବଗତ ॥
ଗୁଣ କର୍ମ ପାର୍ଥକ୍ୟର ତତ୍ତ୍ୱ କଥା ଜାଣି ।

ଅମଳ ନୁଅନ୍ତି ତାହିଁ ସେହି ଦଗ୍ଧଜ୍ଞାନ ॥

ପ୍ରକୃତେର୍ଗୁଣସମ୍ମୂଢ଼ାଃ ସଜ୍ଜନ୍ତେ ଗୁଣକର୍ମସୁ ।
ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ ॥୨୯॥

ଯେମାନେ ପ୍ରକୃତି ଗୁଣେ ହୋଇ ବିମୋହିତ ।
ଇନ୍ଦ୍ରିୟ ଯନ୍ତ୍ରସ୍ଥ କାର୍ଯ୍ୟେ ହୁଅନ୍ତି ଆସକ୍ତ ॥
ସେହି ଅଳ୍ପଦର୍ଶୀ ମୂଢ଼ମତି ଲୋକଗଣେ ।
ବିଚଳିତ ନ କରିବେ କେବେ ଜ୍ଞାନିଜନେ ॥

ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା ।
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ ॥୩୦॥

ଅତଏବ ବୋଲୁଅଛି ଅହେ ଫାଲଗୁନ ।
ଅମ୍ଭପ୍ରତି ସର୍ବ କର୍ମ କର ସମର୍ପଣ ॥
କାମନା ମମତା ଶୋକ ପରିତ୍ୟାଗ କରି ।
ଯୁଦ୍ଧରେ ପ୍ରବୃତ୍ତ ହୁଅ ଉଠ ହେ ଧନୁର୍ଦ୍ଧାରି ॥

ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ ।
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ ॥୩୧॥

ଯେ ଲୋକ ହୋଇ ଶ୍ରଦ୍ଧାବନ୍ତ । ଅସୂୟା ତେଜିଣ ସତତ ॥
ଆମ୍ଭ ମତର ଅନୁବର୍ତ୍ତୀ । ହେଲେ ସହଜେ ପାଏ ମୁକ୍ତି ॥

ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତଂ ।
ସର୍ବଜ୍ଞାନବିମୂଢ଼ାଂସ୍ତାନ୍ ବିଦ୍ଧି ନଷ୍ଟାନଚେତସଃ ॥୩୨॥

ଯେବା ଅସୂୟା ବଶ ହୋଇ । ଆମ୍ଭ ମତରେ ନ ଚଳଇ ॥
ସର୍ବେବ ଜ୍ଞାନେ ସେ ଭ୍ରାନ୍ତି । କର୍ମ ବୁଦ୍ଧିରୁ ହୁଏ ଭ୍ରଷ୍ଟ ॥

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି ।
ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ॥୩୩॥

ଜ୍ଞାନଲୋକମାନେ ନିଜ ପ୍ରକୃତି ବଶରେ ।

ବର୍ତ୍ତନ୍ତି ନାନା କର୍ମ ପୃଥିବୀ ମଧ୍ୟରେ ॥
ସ୍ୱଭାବ ଅଟଇ ଯେଣୁ ସକଳ ପ୍ରଧାନ ।
ଇନ୍ଦ୍ରିୟ ନିଗ୍ରହ ତେବେ କର କ କାରଣ ॥

ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।
ତୟୋର୍ନ ବଶମାଗଚ୍ଛେତ୍ତୌ ହ୍ୟସ୍ୟ ପରିପନ୍ଥିନୌ ॥୩୪॥

ଅନୁକୂଳ ବିଷୟରେ ଇନ୍ଦ୍ରିୟେ ସନ୍ତୋଷ ।
ପ୍ରତିକୂଳ ବିଷୟରେ କରନ୍ତି ବିଦ୍ୱେଷ ॥
ମୁକ୍ତିଇଚ୍ଛାକାରଙ୍କର ଏହି ଦୁଇ ବୈରି
ନ କରିବ କାର୍ଯ୍ୟ ଏମାନଙ୍କୁ ଅନୁସରି ॥

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ॥୩୫॥

ଗୁଣ ହୀନ ହେଲେ ମଧ୍ୟ ନିଜ ଧର୍ମ ଆଚରିବ ।
ଉତ୍କୃଷ୍ଟ ଅନ୍ୟର ଧର୍ମ ପାଶକୁ ନ ଯିବ ॥
ବରଞ୍ଚ ଉଚିତ ନିଜ ଧର୍ମରେ ମରଣ ।
ପରଧର୍ମ ଭୟାବହ ଏହା ମନେ ଘେନ ॥

ଅର୍ଜୁନ ଉବାଚ ।

ଅଥ କେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୂରୁଷଃ ।
ଅନିଚ୍ଛନ୍ନପି ବାର୍ଷ୍ଣେୟ ବଳାଦିବ ନିୟୋଜିତଃ ॥୩୬॥

ପାପରେ ପ୍ରବର୍ତ୍ତ ଯେବେ ନୋହିବ ପୁରୁଷ ।
କରାଇବ କିଏ ତାକୁ ବଳରେ ପ୍ରବେଶ ॥

ଶ୍ରୀଭଗବାନୁବାଚ ।

କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ ।
ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣଂ ॥୩୭॥

ରଜ ଗୁଣୁ ହୋଇ କାମ କ୍ରୋଧ ଉଦ୍ଭବ ଜାଣ ।

ହୁଅନ୍ତି ମୋହର ଶତ୍ରୁ ଜାଣିବ ନିଶ୍ଚିନ୍ତ ॥

ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଲେନ ଚ ।
ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତଂ ॥୩୮॥

ଯେମନ୍ତ ଧୂମରେ ଅଗ୍ନି ମଳରେ ଦର୍ପଣ ।
ଜରାୟୁରେ ଥାଏ ଯଦା ଗର୍ଭ ଆଚ୍ଛାଦନ ॥
ତେସେ କାମ ଆଛାଦନ କରଇ ଜ୍ଞାନକୁ ।
ଅତଏବ ଯତନରେ ତେଜିବ କାମକୁ ॥

ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା ।
କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ ॥୩୯॥

ଅନଳ ସ୍ୱରୂପ କାମ ଜ୍ଞାନଙ୍କର ବୈରୀ ।
ଚିରକାଳ ରହେ ଜ୍ଞାନ ଆଛାଦନ କରି ॥

ଇନ୍ଦ୍ରିୟାଣି ମନୋ ବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।
ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନଂ ॥୪୦॥

କାମ ଆବିର୍ଭାବ ସ୍ଥାନ ଇନ୍ଦ୍ରି ବୁଦ୍ଧି ମନ ।
ଜାତ ହୋଇ କରେ ଦେହୀ ଜ୍ଞାନକୁ ଆଚ୍ଛନ୍ନ ॥

ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ ।
ପାପ୍ମାନଂ ପ୍ରଜହିହ୍ୟେନଂ ଜ୍ଞାନବିଜ୍ଞାନନାଶନଂ ॥୪୧॥

ତେଣୁ ଆଗେ କର ଇନ୍ଦ୍ରିୟକୁ ବଶୀଭୂତ ।
କର ପୁଣି ଜ୍ଞାନ-ନାଶୀ କାମକୁ ଆୟତ୍ତ ॥

ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ ।
ମନସସ୍ତୁ ପରା ବୁଦ୍ଧିର୍ଯୋ ବୁଦ୍ଧେଃ ପରତସ୍ତୁ ସଃ ॥୪୨॥

ଦେହାଦି ବିଷୟଠାରୁ ଇନ୍ଦ୍ରିୟ ଉତ୍କୃଷ୍ଟ ।
ଇନ୍ଦ୍ରିୟ ସମୂହଠାରୁ ମନ ଅଟେ ଶ୍ରେଷ୍ଠ ॥
ମନଠାରୁ ଶ୍ରେଷ୍ଠତର ନିସନ୍ଦେହ ଜ୍ଞାନ ।

ସେହି ଜ୍ଞାନଠାରୁ ଶ୍ରେଷ୍ଠ ପରମାତ୍ମା ଜାଣ ॥
ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମା ନମାତ୍ମନା ।
ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦଂ ॥୪୩॥
ଆତ୍ମାକୁ ଏରୂପ ତୁମ୍ଭେ ହୋଇ ଅବଗତ ।
ବୁଦ୍ଧିଯୋଗେ କର ନିଜ ମନକୁ ସୁସ୍ଥିର ॥
କାମରୂପ ଦୁରାସଦ ବୈରିକୁ ବିନାଶ ।
ଏଥିରେ ଲଭିବ ମୋକ୍ଷ ପଦକୁ ଅବଶ୍ୟ ॥

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟା
ସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କର୍ମଯୋଗ ନାମ ତୃତୀୟୋଽ
ଧ୍ୟାୟଃ ।

---

## ଚତୁର୍ଥୋଽଧ୍ୟାୟଃ ।

ଶ୍ରୀଭଗବାନୁବାଚ ।

ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟଂ ।
ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ ॥୧॥
ପୂର୍ବକାଳେ ଅମ୍ଭେ ଏହି ଅବ୍ୟୟ ଯୋଗକୁ ।
ଯତନରେ ଶିକ୍ଷା ଦେଇଥିଲୁଁ ଆଦିତ୍ୟକୁ ॥
ମନୁଙ୍କୁ ଶିଖାଇ ଥିଲେ ଆଦିତ୍ୟ ଏ ଯୋଗ ।
ଇକ୍ଷ୍ୱାକୁଙ୍କୁ ଶିଖାଇଲେ ମନୁ ମହାଭାଗ ॥
ଏବଂ ପରମ୍ପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ ।
ସ କାଳେନେହ ମହତା ଯୋଗୋ ନଷ୍ଟଃ ପରନ୍ତପ ॥୨॥
ଇକ୍ଷ୍ୱାକୁଠାରୁ ନିମି ଆଦି । ଶିଖିଣ ଥିଲେ ଏ ସମାଧି ।
ତହିଁ ଉତ୍ତରେ ପରନ୍ତପ । କାଳେ ଏ ଯୋଗ ହେଲା ଲୋପ ।

ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ ।
ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ ॥୩॥

ତୁମ୍ଭେ ମୋ ସଖା ପୁଣି ଭକ୍ତ । ମୋଠାରେ ପୁଣ ଅନୁରକ୍ତ ॥
ତେଣୁ ଏ ଯୋଗ ପୁରାତନ । ବିଶେଷି କହୁଁ ଯେ ଅର୍ଜୁନ ॥

ଅର୍ଜୁନ ଉବାଚ ।

ଅପରଂ ଭବତୋ ଜନ୍ମ ପରଂ ଜନ୍ମ ବିବସ୍ୱତଃ ।
କଥମେତଦ୍ୱିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି ॥୪॥

ସୂର୍ଯ୍ୟ କରଥିଲେ ଅଗେ ଜନମ ଗ୍ରହଣ ।
ଅନନ୍ତର ଜନ୍ମଲାଭ କଲେ ଯେ ଆପଣ ॥
ଆପଣଙ୍କଠାରୁ ଶିକ୍ଷା କଲେ ସୂର୍ଯ୍ୟଦେବ ।
ଏକଥା ବା ହୋଇ ପାରେ କେମନ୍ତ ସମ୍ଭବ ॥

ଶ୍ରୀଭଗବାନୁବାଚ ।

ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।
ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ ॥୫॥

ପୂର୍ବେ ଅମ୍ଭେ ଜନ୍ମ ଲଭିଅଛୁଁ ବହୁଥର ।
ତୁମ୍ଭେମଧ୍ୟ ଜନ୍ମିଥିଲ ହେ ମହାବୀର ॥
ତନ୍ତ୍ର ବିଦ୍ୟାର ବଳେ ଅଛୁଁ ଅବଗତ ।
ମାତ୍ର ତୁମ୍ଭେ ସେହି ସବୁ ହୋଇଛ ବିସ୍ମୃତ ॥

ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍ ।
ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ॥୬॥

ଅମ୍ଭର ନାହିଁ ଯେ ଜନ୍ମ ନୋହୁଁ ବିନଶ୍ୱର ।
ପ୍ରାଣିମାନଙ୍କର ମଧ୍ୟେ ଅମ୍ଭେହିଁ ଈଶ୍ୱର ॥
ସ୍ୱୀୟ ପ୍ରକୃତି ରୂପ ଆଶ୍ରୟକୁ ଘେନି ।
ପୁନଃ ପୁନଃ ଜନ୍ମ ଲଭୁଅଛୁଁ କାଳବଳି ॥

ଯଦା ହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ॥୭॥

ଯେତେବେଳେ ହୁଏ ଧର୍ମେ ଗ୍ଲାନି ଉପସ୍ଥିତ ।
ଅଧର୍ମ ହୁଅଇ ଜଗତରେ ସଞ୍ଚାରିତ ॥
ଅମ୍ଭେ ମାୟାବଳେ ସେହି ସେହି ସମୟରେ ।
ଜନ୍ମଲାଭ କରୁଁ ପାର୍ଥ ଜଗତ ମଧ୍ୟରେ ॥୭॥

ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥୮॥

ସାଧୁମାନଙ୍କ ପରିତ୍ରାଣ । ଅସାଧୁମାନଙ୍କ ନିଧନ ।
ଧର୍ମ ସ୍ଥାପନ ଅନୁରାଗେ । ଜନମିଥାଉଁ ଯୁଗେ ଯୁଗେ ॥୮॥

ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ ।
ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ ॥୯॥

ଆମ୍ଭର ସ୍ୱେଚ୍ଛାକୃତ ଜନ୍ମ । ପୁଣି ଯେ ଅଲୌକିକ କର୍ମ ॥
ଯେ ହୁଏ ଏହା ଅବଗତ । ଆମ୍ଭଙ୍କୁ ହୁଏ ସେହି ପ୍ରାପ୍ତ ॥
ନ କରେ ଜନମ ଗ୍ରହଣ । ଆମ୍ଭ ଶରୀରେ ହୁଏ ଲୀନ ॥୯

ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ।
ବହବୋ ଜ୍ଞାନତପସା ପୂତା ମଦ୍ଭାବମାଗତାଃ ॥୧୦॥

ଯେ ଲୋକ ଆସକ୍ତି ଭୟ କ୍ରୋଧ ତ୍ୟାଗ କରି ।
ଏକ ମନେ ଥାଏ ଆମ୍ଭ ପଦ ଅନୁସରି ॥
ଜ୍ଞାନ ତପସ୍ୟାରେ ଯେବା ହୋଇଛି ପବିତ୍ର ।
ଆମ୍ଭର ପ୍ରକୃତ ଭାବ ଅଛି ଅବଗତ ॥୧୦॥

ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥୧୧॥

ଆମ୍ଭଙ୍କୁ ଯେ ଲୋକମାନେ ଭଜନ୍ତି ଯେରୂପେ ।

ଆତ୍ମେ ଅନୁଭବ ତାଙ୍କୁ କରନ୍ତି ସେହିରୂପେ ॥
ଯେ କରୁ ଯେଉଁ ଭକ୍ତ କର୍ମ ଅନେ ପାଳଗନ ।
ସର୍ବ ଆତ୍ମ ସେବା ମାର୍ଗେ କରେ ଅଗମନ ॥୧୧

କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତ ଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା ॥୧୨॥

ଇହଲୋକରେ କର୍ମମାନ । ସଫଳ ହୁଏ କର ଜ୍ଞାନ ॥
ଫଳାଭିଳାଷୀ ଲୋକମାନେ । ଏଣୁ ପୂଜନ୍ତି ଦେବଗଣେ ॥୧୨

ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ।
ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟଂ ॥୧୩॥

ଗୁଣ କର୍ମ ବିଭାଗରେ କରନ୍ତି ସୃଜନ ।
ଜଗତ ମଧ୍ୟରେ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ ॥
ତଥାପି ଆତ୍ମେ ଯେ ଅଟନ୍ତି ବିହୀନ ସଂସାର ।
ସେମାନଙ୍କ କର୍ତ୍ତା ବୋଲି ନ କର ବିଚାର ॥୧୩॥

ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା ।
ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ ॥୧୪॥

କର୍ମ କରି ପାରେ ନାହିଁ ଆତ୍ମକୁ ପରଶ ।
ଆତ୍ମର ଯେ ନାହିଁ କର୍ମଫଳେ ଅଭିଳାଷ ॥
ଏହିରୂପ ହୋଇ ପାରେ ଆତ୍ମକୁ ଯେ ଜ୍ଞାତ ।
ହୁଅଇ ସେ ଲୋକ କର୍ମ ବନ୍ଧନୁ ମୁକ୍ତ ॥୧୪॥

ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ ।
କୁରୁ କର୍ମୈବ ତସ୍ମାତ୍ୱଂ ପୂର୍ବୈଃ ପୂର୍ବତରଂ କୃତଂ ॥୧୫॥

ପ୍ରାଚୀନ ମୁମୁକ୍ଷୁଗଣ ଏହା କରି ଜ୍ଞାନ ।
ପୂର୍ବକାଳେ କରିଥିଲେ କର୍ମ ଅନୁଷ୍ଠାନ ॥
ଅତଏବ ତୁହେ ପାର୍ଥ ହୋଇ ସାବଧାନ ।

ବେଦ୍ୟଂ ପବିତ୍ରମୋଙ୍କାରଋକ୍ସାମଯଜୁରେବ ଚ ॥ ୧୭ ॥
ଅମ୍ଭେ ଜଗତର ପିତା ମାତା ପିତାମହ ।
ପବିତ୍ର ଓଁକାର ବେଦ ଧାତ ପୁଣି ଜ୍ଞେୟ ॥
ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ।
ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟଂ ॥ ୧୮ ॥
ଆମ୍ଭେ ଗତି ଭର୍ତ୍ତା ପ୍ରଭୁ ନିବାସ ଶରଣ ।
ସୁହୃଦ ଅବ୍ୟୟ ବୀଜ ସାକ୍ଷୀ ଲୟ ସ୍ଥାନ ॥
ସକଳ ଆଧାର ପୁଣି ପ୍ରଭବ ପ୍ରଳୟ ।
ଆମ୍ଭଙ୍କୁ ଜାଣିବ ଏହିରୂପେ ହେ କୌନ୍ତେୟ ॥
ତପାମ୍ୟହମହଂ ବର୍ଷଂ ନିଗୃହ୍ଣାମ୍ୟୁତ୍ସୃଜାମି ଚ ।
ଅମୃତଞ୍ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜ୍ଜୁନ ॥ ୧୯ ॥
ଆମ୍ଭେ ପୁଣି କରୁଅଛୁଁ ଉତ୍ତାପ ପ୍ରଦାନ ।
ବାରି ବରିଷଣ ପୁଣି ବାରି ଆକର୍ଷଣ ॥
ଆମ୍ଭେହିଁ ଅମୃତ ସତ ଅସତ ସକଳ ।
ଜଗତ ନିୟନ୍ତା ଅଟୁଁ ଆମ୍ଭେହିଁ କେବଳ ॥
ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା-
ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।
ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ-
ମଶ୍ନନ୍ତି ଦିବ୍ୟାନ୍ ଦିବି ଦେବଭୋଗାନ୍ ॥୨୦॥
ସୋମପାୟୀ ଦ୍ୱିଜଗଣ ଅମ୍ଭଙ୍କୁ ଯଜ୍ଞରେ ।
ସତ୍କାର କରନ୍ତି ମୁକ୍ତି ପାଇବା ଇଚ୍ଛାରେ ॥
ଯଜ୍ଞେ ହୋଇ ସେମାନେ ଯେ ସୁରଲୋକ ପ୍ରାପ୍ତ ।
ଉପଭୋଗ କରନ୍ତି ଯେ ସୁଖ ଦେବବତ୍ ॥
ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ

କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।
ଏବଂ ତ୍ରୟୀଧର୍ମମନୁପ୍ରପନ୍ନା
ଗତାଗତଂ କାମକାମା ଲଭନ୍ତେ ॥ ୨୧ ॥

ସ୍ୱର୍ଗ ସୁଖ ଭୋଗ କରି ଦେଲେ ପୁଣ୍ୟ କ୍ଷୟ ।
ପ୍ରବେଶ କରନ୍ତି ମର୍ତ୍ତ୍ୟ ଲୋକେ ପୁନରାୟ ॥
ଏରୂପେ ବୈଦିକ କର୍ମ କରି ଅନୁଷ୍ଠାନ ।
କରୁଥାନ୍ତି ନିରନ୍ତର ଗମନାଗମନ ॥

ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହଂ ॥ ୨୨ ॥

ଏହିରୂପେ ଯେଉଁମାନେ ଭଜନ୍ତି ଆମ୍ଭକୁ ।
ଦାନ କରୁଁ ଆମ୍ଭେ ଯୋଗ-କ୍ଷେମ ସେମାନଙ୍କୁ ॥

ଯେଽପ୍ୟନ୍ୟଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକଂ ॥ ୨୩ ॥

ଭକ୍ତିରେ ପୂଜନ୍ତି ଆନ ଦେବେ ଯେଉଁମାନେ ।
ଅବିଧିରେ ଆମ୍ଭକୁ ହିଁ ପୂଜନ୍ତି ସେମାନେ ॥

ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ ।
ନ ତୁ ମାମଭିଜାନନ୍ତି ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ ॥ ୨୪ ॥

ଆମ୍ଭେ ତ ଅଟୁଁ ସର୍ବ ଯଜ୍ଞ ପ୍ରଭୁ ପୁଣି ଭୋକ୍ତା ।
ଆମ୍ଭକୁ ନ ଜାଣି ସେବା ପୂଜଇ ଦେବତା ॥
ନ ଜାଣିବା ହେତୁ ଆମ୍ଭ ସ୍ୱରୂପର ତତ୍ତ୍ୱ ।
ହୁଅନ୍ତି ସେ ତେଣୁ ସ୍ୱର୍ଗରାଜ୍ୟ ପରିଚ୍ୟୁତ ॥

ଯାନ୍ତି ଦେବବ୍ରତା ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତାଃ ।
ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ୟାଜିନୋଽପି ମାଂ ॥ ୨୫ ॥

ଲଭନ୍ତି ଦେବତା ଦେବବ୍ରତ ପରାୟଣେ ।
ପିତୃ ଭକ୍ତ ପରାୟଣେ ପାନ୍ତି ପିତୃଗଣେ ॥

ଭୂତ ଉପାସକଗଣ ଲଭନ୍ତି ଭୂତଙ୍କୁ ।
ଆମ୍ଭ ଭକ୍ତଗଣ ଲାଭ କରନ୍ତି ଆମ୍ଭଙ୍କୁ ॥
ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।
ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରଯତାତ୍ମନଃ ॥ ୨୬ ॥
ଭକ୍ତିରେ ଆମ୍ଭକୁ ଫଳ ପତ୍ର ପୁଷ୍ପ ଜଳ ।
ପ୍ରଦାନ କଲେକ କରୁଁ ଗ୍ରହଣ ସକଳ ॥
ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ॥ ୨୭ ॥
କରିବ ଯେତେକ ତୁମ୍ଭେ କର୍ମ ଅନୁଷ୍ଠାନ ।
ଯେ ହୋମ କରିବ ଯାହା କରିବ ଭକ୍ଷଣ ॥
ଦାନ ଯଜ୍ଞ ଯାହା କଷ୍ଟ ତପସ୍ୟା ସାଧନ ।
ଆମ୍ଭକୁ କରିବ ଆନନ୍ଦରେ ସମର୍ପଣ ॥
ଶୁଭାଶୁଭଫଳୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ ।
ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋ ମାମୁପୈଷ୍ୟସି ॥ ୨୮ ॥
ଉକ୍ତ କର୍ମମାନ କଲେ ଆମ୍ଭକୁ ଅର୍ପଣ ।
କର୍ମଜାତ ଶୁଭାଶୁଭରୁଁ ହେବ ବିମୋଚନ ॥
କର୍ମ ସମର୍ପଣ ରୂପ ହୋଇ ଯୋଗଯୁକ୍ତ ।
ତୁମେ କରିବ ଲାଭ ଆମ୍ଭକୁ ନିଶ୍ଚିତ ॥
ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହଂ ॥ ୨୯ ॥
ଆମ୍ଭର ଶତ୍ରୁ ମିତ୍ର ନାହିଁ । ଯେ ଲୋକ ଆମ୍ଭକୁ ପୂଜଇ ।
ଆମ୍ଭକୁ ସେଏ ସେହି ପ୍ରାପ୍ତ । ତାହାରେ ଥାଉଁ ଆମ୍ଭେ ନିତ୍ୟ ॥
ଅପି ଚେତ୍ ସୁଦୁରାଚାରୋ ଭଜତେ ମାମନନ୍ୟଭାକ୍ ।
ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍ବ୍ୟବସିତୋ ହି ସଃ ॥ ୩୦ ॥

ଆମ୍ଭକୁ ପୂଜଇ ଯେବେ ଚଣ୍ଡ ଦୁରାଚାର ।
ସେହି ସାଧୁ ଶ୍ରେଷ୍ଠ ଅଧ୍ୟବସାୟ ତାହାର ॥

କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ॥ ୩୧ ॥

ସେ ଲୋକ ଶୀଘ୍ରସ୍ତ ହୁଏ ଧର୍ମ ପରାୟଣ ।
ଶାନ୍ତି ଲାଭ କରେ ତାର ନ ହୁଏ ନିଧନ ॥

ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିଂ ॥ ୩୨ ॥

ପାପାତ୍ମା ସକଳ ବୈଶ୍ୟ ଶୂଦ୍ର ନାରୀଗଣ ।
ଲଭନ୍ତି ସଦ୍ଗତି କଲେ ଆମ୍ଭକୁ ସେବନ ॥

କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା ଭକ୍ତା ରାଜର୍ଷୟସ୍ତଥା ।
ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାଂ ॥ ୩୩ ॥

ପବିତ୍ର ବ୍ରାହ୍ମଣ ଆଦି ରାଜର୍ଷିଗଣ ।
କ ବୋଲିବୁଁ ଅବା ସେମାନଙ୍କ ଉଦ୍ଧରଣ ॥
ହେ ଅର୍ଜୁନ କର ବାସ ଅନିତ୍ୟ ସଂସାରେ ।
ଆମ୍ଭକୁ ପୂଜିବ ସଦା ଭକ୍ତି ସହକାରେ ॥

ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣଃ ॥ ୩୪ ॥

ଭକ୍ତିରେ ଆମ୍ଭକୁ କର ମନ ସମର୍ପଣ ।
କର ନମସ୍କାର ପୂଜା ହୋଇ ଶୁଦ୍ଧ ମନ ॥
ଆମ୍ଭକୁ କଲେକ ସେବା ହୋଇ ସମାହିତ ।
ନିଶ୍ଚୟ ହେବଟି ଆମ୍ଭ ସ୍ୱରୂପକୁ ପ୍ରାପ୍ତ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗ-

ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ରାଜବିଦ୍ୟା ରାଜଗୁହ୍ୟଯୋଗୋ ନାମ ନବମୋଽଧ୍ୟାୟଃ ।

---

## ଦଶମୋଽଧ୍ୟାୟଃ ।

### ଶ୍ରୀଭଗବାନୁବାଚ ।

ଭୂୟ ଏବ ମହାବାହୋ ଶୃଣୁ ମେ ପରମଂ ବଚଃ ।
ଯତ୍ତେଽହଂ ପ୍ରୀୟମାଣାୟ ବକ୍ଷ୍ୟାମି ହିତକାମ୍ୟୟା ॥ ୧ ॥
ଆମ୍ଭ ବାକ୍ୟ ଶୁଣି ହେଉଅଛ ଆନନ୍ଦିତ ।
ତେଣୁ ତୁମ୍ଭେ କହୁ ତୁମ୍ଭ କୁଶଳ ନିମିତ୍ତ ॥
ବୋଲୁଅଛୁଁ ଅବେ ପାର୍ଥ ଶୁଣ ମନ ଦେଇ ।
ଯେ କଥା ଶୁଣିଲେ ପାପ ଦେହେ ନା ଲାଗଇ ॥
ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।
ଅହମାଦିର୍ହି ଦେବାନାଂ ମହର୍ଷୀଣାଞ୍ଚ ସର୍ବଶଃ ॥ ୨ ॥
ମହର୍ଷି ଦେବତା ସମସ୍ତ । ନୁହନ୍ତି ଆମ୍ଭ କଥା ଜ୍ଞାତ ।
ସର୍ବ ବିଷୟେ ଆମ୍ଭେ ଜ୍ୟେଷ୍ଠ । ସେମାନେ ଆମ୍ଭର କନିଷ୍ଠ ॥
ଯୋ ମାମଜମନାଦିଞ୍ଚ ବେତ୍ତି ଲୋକମହେଶ୍ୱରଂ ।
ଅସମ୍ମୂଢ଼ଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ ॥ ୩ ॥
ଆମ୍ଭେ ଅନାଦି ପରମେଶ୍ୱର । ଜନ୍ମ ବିହୀନ ମହେଶ୍ୱର ।
ଆମ୍ଭ ସ୍ୱରୂପ ଯେ ଜାଣଇ । ତା ଦେହେ ପାପ ନ ଲାଗଇ ॥
ବୁଦ୍ଧିର୍ଜ୍ଞାନମସମ୍ମୋହଃ କ୍ଷମା ସତ୍ୟଂ ଦମଃ ଶମଃ ।
ସୁଖଂ ଦୁଃଖଂ ଭବୋଽଭାବୋ ଭୟଞ୍ଚାଭୟମେବ ଚ ॥ ୪ ॥
ଆମ୍ଭେ ବୁଦ୍ଧି ବ୍ୟାକୁଳତା ଜ୍ଞାନ କ୍ଷମା ଦମ ।
ସୁଖ ଦୁଃଖ ଜନ୍ମ ମୃତ୍ୟୁ ଭୟ ସତ୍ୟ ଶମ ॥
ଅହିଂସା ସମତା ତୁଷ୍ଟିସ୍ତପୋ ଦାନଂ ଯଶୋଽଯଶଃ ।

ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍ବିଧାଃ ॥ ୫ ॥

ଅହିଂସା ସମତା ତୁଷ୍ଟି ତପ ଦାନ ଖ୍ୟାତି ।
ଏମନ ଏମନ ଭାବ ଆମ୍ଭଠାରୁ ଯେ ଉପୁଜ ॥

ମହର୍ଷୟଃ ସପ୍ତ ପୂର୍ବେ ଚତ୍ୱାରୋ ମନବସ୍ତଥା ।
ମଦ୍ଭାବା ମାନସା ଜାତା ଯେଷାଂ ଲୋକ ଇମାଃ ପ୍ରଜାଃ ॥ ୬ ॥

ପୂର୍ବେ ହୋଇଲେ ସପ୍ତଋଷି ମନୁ ଚାରିଜଣ ।
ଆମ୍ଭଠାରୁ କରଥିଲେ ଜନମ ଗ୍ରହଣ ॥
ସେମାନଙ୍କଠାରୁ ପ୍ରଜା ହୋଇଛନ୍ତି ଜାତ ।
ଅତେବ ମହାବାହୋ ବୁଝ ଏ ସକଳ ଜ୍ଞାତ ॥

ଏତାଂ ବିଭୂତିଂ ଯୋଗଞ୍ଚ ମମ ଯୋ ବେତ୍ତି ତତ୍ତ୍ୱତଃ ।
ସୋଽବିକମ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ ॥ ୭ ॥

ଯେ ଜାଣେ ଆମ୍ଭର ବିଭୂତି । ଆମ୍ଭର ଐଶ୍ୱର୍ଯ୍ୟ ପ୍ରଭୃତି ।
ସେ ଅଟେ ଜ୍ଞାନୀ ନିସନ୍ଦେହ । ତେଣୁ ସେ ପାରେ ମାୟା ଏଡ଼ାଇ ॥

ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।
ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ ॥ ୮ ॥

ଜଗତ କାରଣ ଜାଣି ଆମ୍ଭଙ୍କୁ ଜ୍ଞାନୀଏ ।
ଆମ୍ଭକୁ ଭଜନ୍ତି ପୂଜା ସକଳ ସମୟେ ॥

ମଚ୍ଚିତ୍ତା ମଦ୍ଗତପ୍ରାଣା ବୋଧୟନ୍ତଃ ପରସ୍ପରଂ ।
କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ ॥ ୯ ॥

ଆମ୍ଭକୁ ଜ୍ଞାନୀଏ କରି ମନ ସମର୍ପଣ ।
ଆମ୍ଭ ବିଷୟରେ କରି ଲଭ ତତ୍ତ୍ୱଜ୍ଞାନ ॥
କରଣ କୀର୍ତ୍ତନ ଆମ୍ଭ ନାମ ଦିବାନିଶି ।
ମନରେ ଲଭନ୍ତି ଲଭ ପରମ ସନ୍ତୋଷ ॥

ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକଂ ।

ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ॥ ୧୦ ॥
ଯେମାନେ ପ୍ରୀତି ସହିତରେ । ଭଜନ୍ତି ଏମନ୍ତ ଆମ୍ଭଠାରେ ॥
ଅମ୍ଭେହିଁ ଜାଣି ତାଙ୍କ ମନ । କରୁଁ ଯେ ସୁବୁଦ୍ଧି ପ୍ରଦାନ ।
ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।
ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ॥ ୧୧ ॥
ଜ୍ଞାନକୃପାତ ଅନୁଗ୍ରହ । କରିବା ପାଇଁ ହେ କୌନ୍ତେୟ ।
ଜ୍ଞାନ ପ୍ରଦୀପେ କରୁଁ ଦୂର । ତାହାଙ୍କ ମନ ଅନ୍ଧକାର ॥
ଅର୍ଜୁନ ଉବାଚ ।
ପରଂ ବ୍ରହ୍ମ ପରଂ ଧାମ ପବିତ୍ରଂ ପରମଂ ଭବାନ୍ ।
ପୁରୁଷଂ ଶାଶ୍ୱତଂ ଦିବ୍ୟମାଦିଦେବମଜଂ ବିଭୁଂ ॥ ୧୨ ॥
ହେ କୃଷ୍ଣ ତୁମ୍ଭେ ପରବ୍ରହ୍ମ । ତୁମ୍ଭେହିଁ ସକଳ ଆଶ୍ରମ ।
ପରମ ପବିତ୍ର ଶାଶ୍ୱତ । ଜନ୍ମ ବର୍ଜିତ ଆଦି ଅନନ୍ତ ।
ସର୍ବ ବ୍ୟାପକ ପରମେଶ୍ୱର । ବିଶ୍ୱ ବ୍ରହ୍ମାଣ୍ଡ ମୂଳାଧାର ॥
ଆହୁସ୍ତ୍ୱାମୃଷୟଃ ସର୍ବେ ଦେବର୍ଷିର୍ନାରଦସ୍ତଥା ।
ଅସିତୋ ଦେବଲୋ ବ୍ୟାସଃ ସ୍ୱୟଂ ଚୈବ ବ୍ରବୀଷି ମେ ॥ ୧୩ ॥
ଦେବର୍ଷି ନାରଦ ପୁଣି ଅସିତ ଦେବଳ ।
କୃଷ୍ଣଦ୍ୱୈପାୟନ ପୁଣି ମହର୍ଷି ସକଳ ॥
ପୂର୍ବ ରୂପେ ଆପଣଙ୍କୁ କରନ୍ତି ନିର୍ଦ୍ଦେଶ ।
ଆପଣ ଏରୂପେମଧ କରନ୍ତି ପ୍ରକାଶ ॥
ସର୍ବମେତଦୃତଂ ମନ୍ୟେ ଯନ୍ମାଂ ବଦସି କେଶବ ।
ନ ହି ତେ ଭଗବନ୍ ବ୍ୟକ୍ତିଂ ବିଦୁର୍ଦେବା ନ ଦାନବାଃ ॥ ୧୪ ॥
ହେ କେଶବ ମୋତେ ବୋଲୁଛନ୍ତି ଯେ ପ୍ରକାର ।
ଜାଣୁଛିହିଁ ସନ୍ଦେହ ନାହିଁ ସେଥିରେ ମୋହର ॥
ହେ ମଧୁସୂଦନ ଯେତେ ଅଛନ୍ତି ଦେବ ଦୈତ୍ୟ ।

ନୁହନ୍ତି ତୁମ୍ଭର ସ୍ୱରୂପକୁ ଅବଗତ ॥
ସ୍ୱୟମେବାତ୍ମନାତ୍ମାନଂ ବେତ୍ଥ ତ୍ୱଂ ପୁରୁଷୋତ୍ତମ ।
ଭୂତଭାବନ ଭୂତେଶ ଦେବଦେବ ଜଗତ୍ପତେ ॥ ୧୫ ॥
ହେ ପୁରୁଷୋତ୍ତମ ଭୂତଭାବନ ଭୂତେଶ ।
ଜଗତେ ଦେବଦେବ ତୁମ୍ଭେ ମୋଠାରେ ପ୍ରକାଶ ॥
ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ ।
ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି ॥ ୧୬ ॥
ଯେ ସବୁ ବିଭୂତି ଯୋଗେ ଅଛ ତୁମ୍ଭେ ବ୍ୟାପି ।
ଜଗତ୍କୁ ମୋତେ ସେହୁ ସକଳ କହତ ॥
କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍ ।
କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ମୟା ॥ ୧୭ ॥
ଜାଣିବ ତୁମ୍ଭଙ୍କୁ ମୁହିଁ କି କି ଉପାୟରେ ।
ଦେଖିବି ତୁମ୍ଭଙ୍କୁ କେଉଁ କେଉଁ ପଦାର୍ଥରେ ॥
ବିସ୍ତରେଣାତ୍ମନୋ ଯୋଗଂ ବିଭୂତିଂ ଚ ଜନାର୍ଦ୍ଦନ ।
ଭୂୟଃ କଥୟ ତୃପ୍ତିର୍ହି ଶୃଣ୍ୱତୋ ନାସ୍ତି ମେଽମୃତମ୍ ॥ ୧୮ ॥
ବୋଲ ହେ ବିସ୍ତାର ତୁମ୍ଭ ଐଶ୍ୱର୍ଯ୍ୟ ବିଭୂତି ॥
ତୁମ୍ଭ ସୁଧା ବାକ୍ୟ ଶୁଣି ତନୁ ନାହିଁ ତୃପ୍ତି ॥
ଭଗବାନୁବାଚ ।
ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।
ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ॥ ୧୯ ॥
ଆମ୍ଭ ବିଭୂତିର ସୀମା ନାହିଁ ହେ ଅର୍ଜ୍ଜୁନ ।
ତଥାପି ବୋଲୁଛୁଁ କେତେ ଗୋଟି ଏବେ ଶୁଣ ॥
ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟସ୍ଥିତଃ ।
ଅହମାଦିଶ୍ଚ ମଧ୍ୟଞ୍ଚ ଭୂତାନାମନ୍ତ ଏବ ଚ ॥ ୨୦ ॥

ସମସ୍ତ ଆତ୍ମାରେ ଆମ୍ଭେ ଅଛୁଁ ଅବସ୍ଥିତ ।
ଆମ୍ଭେ ଅଟୁଁ ସର୍ବ ଭୂତ ଆଦି ମଧ୍ୟ ଅନ୍ତ ॥
ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।
ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂଶଶୀ ॥୨୧ ॥
ଆଦିତ୍ୟ ମଣ୍ଡଳେ ଆମ୍ଭେ ବିଷ୍ଣୁ ଚକ୍ରଧାରୀ ।
ଜ୍ୟୋତି ମଣ୍ଡଳରେ ଆମ୍ଭେ ସୂର୍ଯ୍ୟ ତମିହର ॥
ମରୁଦ୍ଗଣ ମଧ୍ୟେ ଆମ୍ଭେ ମରୀଚି ପ୍ରଧାନ ।
ଆମ୍ଭଙ୍କୁ ନକ୍ଷତ୍ର ମଧ୍ୟେ ଚନ୍ଦ୍ର ବୋଲି ଜାଣ ॥
ବେଦାନାଂ ସାମବେଦୋଽସ୍ମି ଦେବାନାମସ୍ମି ବାସବଃ ।
ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି ଭୂତାନାମସ୍ମି ଚେତନା । ୨୨ ।
ବେଦ ମଧ୍ୟେ ସାମ ଦେବ ମଧ୍ୟେ ଶଚୀପତି ।
ଭୂତରେ ଚୈତନ୍ୟ ଇନ୍ଦ୍ରିୟଙ୍କ ମଧ୍ୟେ ମତି ॥
ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ବିତ୍ତେଶୋ ଯକ୍ଷରକ୍ଷସାଂ ।
ବସୂନାଂ ପାବକଶ୍ଚାସ୍ମି ମେରୁଃ ଶିଖରିଣାମହଂ । ୨୩ ।
ରୁଦ୍ରଗଣ ମଧ୍ୟେ ଆମ୍ଭେ ଅଟୁଁ ଯେ ଶଙ୍କର ।
ଯକ୍ଷ ରାକ୍ଷସଙ୍କ ମଧ୍ୟେ ପ୍ରଧାନ କୁବେର ॥
ପୁରୋଧସାଞ୍ଚ ମୁଖ୍ୟଂ ମାଂ ବିଦ୍ଧି ପାର୍ଥ ବୃହସ୍ପତିଂ ।
ସେନାନୀନାମହଂ ସ୍କନ୍ଦଃ ସରସାମସ୍ମି ସାଗରଃ ॥ ୨୪ ॥
ପୁରୋହିତଗଣ ମଧ୍ୟେ ଅଟୁଁ ବୃହସ୍ପତି ।
ସେନାଗଣ ମଧ୍ୟେ କାର୍ତ୍ତିକେୟ ସେନାପତି ॥
ସ୍ଥିର ଜଳାଶୟ ମଧ୍ୟେ ଅଟୁଁ ଯେ ସାଗର ।
ଆମ୍ଭଙ୍କୁ ଜାଣିବ ଏହିରୂପେ ମହାବୀର ।
ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେକମକ୍ଷରଂ ।
ଯଜ୍ଞାନାଂ ଜପଯଜ୍ଞୋଽସ୍ମି ସ୍ଥାବରାଣାଂ ହିମାଳୟଃ ॥ ୨୫ ॥

ମହର୍ଷିଙ୍କ ମଧ୍ୟେ ଭୃଗୁ ବାକ୍ୟରେ ଓଁ କାର ।।
ସ୍ଥାବରଙ୍କ ମଧ୍ୟେ ହିମବାନ ଗିରିବର ।
ଯଜ୍ଞ ମଧ୍ୟେ ଜପଯଜ୍ଞ ଜାଣିବ ଅର୍ଜ୍ଜୁନ ।
ସକଳ ବୃକ୍ଷଙ୍କ ମଧ୍ୟେ ଅଶ୍ୱତ୍ଥ ମୁଁ ପ୍ରଧାନ ।।

ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଞ୍ଚ ନାରଦଃ ।
ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଲୋ ମୁନିଃ ।। ୨୬ ।।

ବୃକ୍ଷମାନଙ୍କର ମଧ୍ୟେ ଅମ୍ଭେହିଁ ଅଶ୍ୱତ୍ଥ ।
ଗନ୍ଧର୍ବମାନଙ୍କ ମଧ୍ୟେ ଆମ୍ଭେ ଚିତ୍ରରଥ ।
ସିଦ୍ଧ ମୁନିଗଣ ମଧ୍ୟେ କପିଳ ମହର୍ଷି ।
ଦେବ ଋଷିଗଣ ମଧ୍ୟେ ନାରଦ ଦେବର୍ଷି ।

ଉଚ୍ଚୈଃଶ୍ରବସମଶ୍ୱାନାଂ ବିଦ୍ଧି ମାମମୃତୋଦ୍ଭବଂ ।
ଐରାବତଂ ଗଜେନ୍ଦ୍ରାଣାଂ ନରାଣାଞ୍ଚ ନରାଧିପଂ ।। ୨୭ ।।

ଅଶ୍ୱେ ଉଚ୍ଚୈଃଶ୍ରବା ହସ୍ତି ମଧ୍ୟେ ଐରାବତ [illegible]
ମନୁଷ୍ୟଙ୍କ ମଧ୍ୟେ ରାଜା ଅମ୍ଭେ ଅଟୁ ପାର୍ଥ [illegible]

ଆୟୁଧାନାମହଂ ବଜ୍ରଂ ଧେନୂନାମସ୍ମି କାମଧୁକ୍ ।
ପ୍ରଜନଶ୍ଚାସ୍ମି କନ୍ଦର୍ପଃ ସର୍ପାଣାମସ୍ମି ବାସୁକିଃ ।। ୨୮ ।।

ଆୟୁଧରେ ବଜ୍ରଧେନୁ ମଧ୍ୟେ କାମଧେନୁ ।
ପ୍ରଜା ଜାତ ପାଇଁ କାମଜାତ ଦେବ ମୁଁ ମନୁ ।

ଅନନ୍ତଶ୍ଚାସ୍ମି ନାଗାନାଂ ବରୁଣୋ ଯାଦସାମହଂ ।
ପିତୃଣାମର୍ଯ୍ୟମା ଚାସ୍ମି ଯମଃ ସଂଯମତାମହଂ ।। ୨୯ ।।

ବିଷଯୁକ୍ତ ସର୍ପମଧ୍ୟେ ଅନନ୍ତ ପ୍ରଧାନ ।
ଜଳଚରଗଣ ମଧ୍ୟେ ଅଟୁଁ ଯେ ବରୁଣ ।
ପିତୃଲୋକଗଣ ମଧ୍ୟେ ଅମ୍ଭେହିଁ ଅର୍ଯ୍ୟମା ।
ନିୟମକାରଙ୍କ ମଧ୍ୟେ ଅମ୍ଭେ ଅଟୁଁ ଯମ ।।

ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ କାଳଃ କଳୟତାମହଂ ।
ମୃଗାଣାଞ୍ଚ ମୃଗେନ୍ଦ୍ରୋଽହଂ ବୈନତେୟଶ୍ଚ ପକ୍ଷିଣାଂ ॥ ୩୦ ॥
ଦୈତ୍ୟମାନଙ୍କର ମଧ୍ୟେ ପ୍ରହ୍ଲାଦ ଧାର୍ମିକ ।
ଗଣନାକାରଙ୍କ ମଧ୍ୟେ କାଳ ସର୍ବାନ୍ତକ ॥
ମୃଗମାନଙ୍କର ମଧ୍ୟେ ମୃଗେନ୍ଦ୍ର କେଶରୀ ।
ପକ୍ଷିମାନଙ୍କର ମଧ୍ୟେ ଗରୁଡ଼ ସର୍ପାରି ॥
ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହଂ ।
ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ ॥ ୩୧ ॥
ଯାବତୀୟ ବେଗବାନ ମଧ୍ୟରେ ପବନ ।
ଶସ୍ତ୍ରଧାରିଗଣ ମଧ୍ୟେ କୌଶଲ୍ୟା ନନ୍ଦନ ॥
ଯାବତୀୟ ମତ୍ସ୍ୟ ମଧ୍ୟେ ଆମ୍ଭେହିଁ ମକର ।
ନଦୀରେ ଜାହ୍ନବୀ ଆମ୍ଭେ ଜାଣ ନଦୀବର ॥
ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଞ୍ଚୈବାହମର୍ଜ୍ଜୁନ ।
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହଂ ॥ ୩୨ ॥
ସୃଷ୍ଟିଦ୍ରବ୍ୟ ମଧ୍ୟେ ଆମ୍ଭେ ଆଦି ଅନ୍ତ ମଧ୍ୟ ।
ବିଦ୍ୟା ମଧ୍ୟେ ଆତ୍ମବିଦ୍ୟା ବାଦ ମଧ୍ୟେ ବାଦ ॥
ଅକ୍ଷରାଣାମକାରୋଽସ୍ମି ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।
ଅହମେବାକ୍ଷୟଃ କାଲୋ ଧାତାହଂ ବିଶ୍ୱତୋମୁଖଃ ॥ ୩୩ ॥
ଅକ୍ଷର ସକଳ ମଧ୍ୟେ ଆମ୍ଭେ ଯେ ଅକାର ।
ସମାସ ମଧ୍ୟେ ଦ୍ୱନ୍ଦ୍ୱ ପୁଣି ଧାତା ଲୋକଙ୍କର ॥
ମୃତ୍ୟୁଃ ସର୍ବହରଶ୍ଚାହମୁଦ୍ଭବଶ୍ଚ ଭବିଷ୍ୟତାଂ ।
କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ ସ୍ମୃତିର୍ମେଧା ଧୃତିଃ କ୍ଷମା ॥ ୩୪ ॥
ଆମ୍ଭେ ସର୍ବ ସଂହାରକ ମୃତ୍ୟୁ ହେ ଅର୍ଜ୍ଜୁନ ।
ଅଗାମୀ କାଳର ପ୍ରାଣୀ ସୃଜନ କାରଣ ॥

ନାରୀମାନଙ୍କର ମଧ୍ୟେ କୀର୍ତ୍ତି ଶ୍ରୀ ସ୍ମୃତି ।
ବାକ ପ୍ରକାଶ୍ୟ ମେଧା ପୁଣି କ୍ଷମା ଧୃତି ॥
ବୃହତ୍ସାମ ତଥା ସାମ୍ନାଂ ଗାୟତ୍ରୀ ଛନ୍ଦସାମହଂ ।
ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ ॥ ୩୫ ॥
ସାମବେଦରେ ବୃହତ୍ ସାମ । ଛନ୍ଦରେ ଗାୟତ୍ରୀ ଉତ୍ତମ
ମାସ ମଧ୍ୟରେ ମାର୍ଗଶୀର୍ଷ । ଋତୁରେ ବସନ୍ତ ପ୍ରକାଶ ॥
ଦ୍ୟୂତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହଂ ।
ଜୟୋଽସ୍ମି ବ୍ୟବସାୟୋଽସ୍ମି ସତ୍ତ୍ୱଂ ସତ୍ତ୍ୱବତାମହଂ ॥ ୩୬ ॥
ପ୍ରବଞ୍ଚକମାନଙ୍କର ମଧ୍ୟେ ଅଟେ ଦ୍ୟୂତ ।
ତେଜସ୍ୱୀମାନଙ୍କ ତେଜ ସତ୍ତ୍ୱବାନେ ସତ୍ତ୍ୱ ॥
ବୃଷ୍ଣୀନାଂ ବାସୁଦେବୋଽସ୍ମି ପାଣ୍ଡବାନାଂ ଧନଞ୍ଜୟଃ ।
ମୁନୀନାମପ୍ୟହଂ ବ୍ୟାସଃ କବୀନାମୁଶନା କବିଃ ॥ ୩୭ ॥
ବୃଷ୍ଣିବଂଶ ଜାତ ଲୋକ ମଧ୍ୟେ ବାସୁଦେବ ।
କୁରୁବଂଶ ମଧ୍ୟେ ତୁହିଁ ଅର୍ଜ୍ଜୁନ ପାଣ୍ଡବ ॥
କବିଗଣ ମଧ୍ୟେ ଶୁକ୍ର ମୁନି ମଧ୍ୟେ ବ୍ୟାସ ।
ଏହିରୂପେ ବ୍ରହ୍ମାଣ୍ଡରେ ରହିଛୁଁ ପ୍ରକାଶ ॥
ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାଂ ।
ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହଂ ॥ ୩୮ ॥
ଶାସନକାରଙ୍କ ମଧ୍ୟେ ଅଟେ ଦଣ୍ଡ ପାର୍ଥ ।
ଜୟ ଅଭିଳାଷୀ ମଧ୍ୟେ ନୀତିରେ ବସତ ॥
ଗୋପନୀୟ ବସ୍ତୁରେ ତୁହିଁ ମୌନଭାବ ।
ଜ୍ଞାନବାନ ମଧ୍ୟେ ଜ୍ଞାନ ଆମ୍ଭକୁ ଜାଣିବ ॥
ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜ୍ଜୁନ ।
ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରଂ ॥ ୩୯ ॥

ଭୂତଙ୍କ ଉତ୍ପତ୍ତି କାରଣ । ଅମ୍ଭନ୍ତୁଁ କେହି ନାହିଁ ଭିନ୍ନ ॥
ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରନ୍ତପ ।
ଏଷ ତୂଦ୍ଦେଶତଃ ପ୍ରୋକ୍ତୋ ବିଭୂତେର୍ବିସ୍ତରୋ ମୟା ॥ ୪୦ ॥
ଆମ୍ଭ ବିଭୂତିର ଅନ୍ତ ନାହିଁ ହେ ଅର୍ଜୁନ ।
ସଂକ୍ଷେପ ବିଭୂତି କଥା କଲୁଁ ଯେ କୀର୍ତ୍ତନ ॥
ଯଦ୍ୟଦ୍ବିଭୂତିମତ୍ ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶସମ୍ଭବଂ ॥ ୪୧ ॥
ଯେ ବସ୍ତୁ ଐଶ୍ୱର୍ଯ୍ୟେ ଗରିଷ୍ଠ । ଶ୍ରୀମନ୍ତ ସମ୍ପତ୍ତି ବିଶିଷ୍ଟ ।
ତେଜ ପ୍ରଭାବେ ବଳୀୟାନ । ସେ ସର୍ବ ଆମ୍ଭ ଅଂଶ ଜାଣ ॥
ଅଥ ବା ବହୁନୈତେନ କିଂ ଜ୍ଞାତେନ ତବାର୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ॥ ୪୨ ॥
ଅମ୍ଭର ବିଭୂତି ସର୍ବ ପୃଥକ ରୂପରେ ।
ପ୍ରୟୋଜନ ହେଉ ନାହିଁ ଜାଣିବା କଥାରେ ॥
ଜଗତ ସଂସାର ମଧ୍ୟେ ରହିଛନ୍ତି ବ୍ୟାପ୍ତ ।
ଅମ୍ଭ ଭିନ୍ନ ବଳି ବସ୍ତୁ ନାହିଁ ଅଟେ ପାର୍ଥ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ବିଭୂତିଯୋଗୋନାମ ଦଶମୋଽଧ୍ୟାୟଃ ।

---

## ଏକାଦଶୋଽଧ୍ୟାୟଃ ।

ଅର୍ଜୁନ ଉବାଚ ।

ମଦନୁଗ୍ରହାୟ ପରମଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତଂ ।
ଯତ୍ତ୍ୱୟୋକ୍ତଂ ବଚସ୍ତେନ ମୋହୋଽୟଂ ବିଗତୋ ମମ । ୧ ।

ହେ କୃଷ୍ଣ ଅପଣ ଯାହା ଅନୁଗ୍ରହ କରୁ ।
ଦେହ ଅତ୍ମା ଗୁପ୍ତ କଥା ବୋଇଲେ ବିସ୍ତାର ॥
ତେଣୁ ହେଲା ମୋର ମନୁ ସର୍ବଭ୍ରାନ୍ତ ଦୂର ।
କୃତ୍ୟ କୃତ୍ୟ ହେଲ ମୁହିଁ ଅହେ ଚକ୍ରଧରୁ ॥

ଭବାପ୍ୟୟୌ ହି ଭୂତାନାଂ ଶ୍ରୁତୌ ବିସ୍ତରଶୋ ମୟା ।
ତ୍ୱତ୍ତଃ କମଲପତ୍ରାକ୍ଷ ମହାତ୍ମ୍ୟମପିଚାବ୍ୟୟଂ । ୨ ।

ଭୂତଗଣ ଉତପତ୍ତି ଲୟ ବିବରଣ ।
ତୁମ୍ଭର ମାହାତ୍ମ୍ୟମଧ୍ୟ କଲି ଯେ ଶ୍ରବଣ ॥

ଏବମେତଦ୍‌ଯଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର ।
ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ । ୩ ।

ବୋଇଲ ଐଶିକ ରୂପ ତୁମ୍ଭର ଯାଦୃଶ ।
ତାହା ଦେଖିବାକୁ ବାଞ୍ଛଅଛୁ ଗୁଡ଼ାକେଶ ॥

ମନ୍ୟସେ ଯଦି ତଚ୍ଛକ୍ୟଂ ମୟା ଦ୍ରଷ୍ଟୁମିତି ପ୍ରଭୋ ।
ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟଂ । ୪ ।

ଯଦି ମୁହିଁ ଯୋଗ୍ୟ ହୁଏଁ ଦେଖିବା ନିମନ୍ତେ ।
କୃପା କରି ଦିବ୍ୟ ରୂପ ଦେଖାଅ ହେ ମୋତେ ॥

ଭଗବାନୁବାଚ ।

ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ।
ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ । ୫ ।

ଆମ୍ଭର ଯେ ନାନା ରୂପ ଅଲୌକିକ ବର୍ଣ୍ଣ ।
ସହସ୍ର ସହସ୍ର ରୂପ କର ହେ ଦର୍ଶନ ॥

ପଶ୍ୟାଦିତ୍ୟାନ୍ ବସୂନ୍ ରୁଦ୍ରାନଶ୍ୱିନୌ ମରୁତସ୍ତଥା ।
ବହୂନ୍ୟଦୃଷ୍ଟପୂର୍ବାଣି ପଶ୍ୟାଶ୍ଚର୍ଯ୍ୟାଣି ଭାରତ । ୬ ।

ଅମ୍ଭ ଦେହେ ସୂର୍ଯ୍ୟ ବସୁ ରୁଦ୍ର ମରୁ[illegible]

ଗୁଣିଗି କୁମାର ହସ୍ତ କର ନିରୀକ୍ଷଣ ॥
ଇହୈକସ୍ଥଂ ଜଗତ୍ କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରଂ ।
ମମ ଦେହେ ଗୁଡାକେଶ ଯଚ୍ଚାନ୍ୟଦ୍ ଦ୍ରଷ୍ଟୁମିଚ୍ଛସି ।୭।
ଆମ୍ଭ ଦେହେ ଚରାଚର ଜଗତ ପ୍ରକାଶ ।
ନିରୀକ୍ଷଣ କର ଯାହା ଅଛି ଗୁଡାକେଶ ॥
ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା ।
ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟ ମେ ଯୋଗମୈଶ୍ୱରଂ ।୮।
ତୁମ୍ଭ ନେତ୍ରରେ କଦାଚିତ । ଦେଖିବା ପାଇଁ ସମରଥ ।
ନୋହିବ ଯେବେ ତେଣୁ ଆମ୍ଭେ । ଦିବ୍ୟ ନୟନ ଦେଉ ଏବେ ॥
ଏ ନେତ୍ରେ କର ହେ ପ୍ରତ୍ୟକ୍ଷ । ଆମ୍ଭର ରୂପ ଅଲୌକିକ ॥

ସଞ୍ଜୟ ଉବାଚ ।

ଏବମୁକ୍ତ୍ୱା ତତୋ ରାଜନ୍ ମହାଯୋଗେଶ୍ୱରୋ ହରିଃ ।
ଦର୍ଶୟାମାସ ପାର୍ଥାୟ ପରମଂ ରୂପମୈଶ୍ୱରଂ ।୯।
ଏତେକ ବୋଲି ହୃଷୀକେଶ । ସ୍ୱରୂପ କଲେକ ପ୍ରକାଶ ॥
ସେ ବିଶ୍ୱରୂପ ହେ ରାଜନ । ଅର୍ଜୁନ କଲେକ ଦର୍ଶନ ॥
ଅନେକବକ୍ତ୍ରନୟନମନେକାଦ୍ଭୁତଦର୍ଶନଂ ।
ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧଂ ।୧୦।
ଅନେକ ମୁଖ ବହୁ ନେତ୍ର । ଅଦ୍ଭୁତ ଦର୍ଶନ ବିଚିତ୍ର ॥
ନାନାଅଳଙ୍କାରେ ଭୂଷିତ । ଦର୍ଶନ କଲେ ତାହା ପାର୍ଥ ॥
ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନଂ ।
ସର୍ବାଶ୍ଚର୍ଯ୍ୟମୟଂ ଦେବମନନ୍ତଂ ବିଶ୍ୱତୋମୁଖଂ ।୧୧।
ଦିବ୍ୟ ମାଳା ଦିବ୍ୟ ବସ୍ତ୍ରେ ଅଟେ ଶୋଭମାନ ।
ଚନ୍ଦନ ଚର୍ଚ୍ଚିତ ଦେହ ଆଶ୍ଚର୍ଯ୍ୟ ଦର୍ଶନ ॥
ଅନନ୍ତ ବିଶ୍ୱତୋମୁଖ ବିଶ୍ୱବ୍ୟାପୀ ଦେବ ।

ଏମନ୍ତ ଅଦ୍ଭୁତ ରୂପ ଦେଖିଲେ କୌନ୍ତେୟ ॥

ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍ ଯୁଗପଦୁତ୍ଥିତା ।
ଯଦି ଭାଃ ସଦୃଶୀ ସା ସ୍ୟାଦ୍ଭାସସ୍ତସ୍ୟ ମହାତ୍ମନଃ । ୧୨ ।

ଆକାଶରେ ହେଲେ ଉଦେ ସହସ୍ର ଭାସ୍କର ।
ସେ ରୂପକୁ ଅବା ହୋଇ ପାରେ ପଟାନ୍ତର ॥

ତତ୍ରୈକସ୍ଥଂ ଜଗତ୍ କୃତ୍ସ୍ନଂ ପ୍ରବିଭକ୍ତମନେକଧା ।
ଅପଶ୍ୟଦ୍ଦେବଦେବସ୍ୟ ଶରୀରେ ପାଣ୍ଡବସ୍ତଦା । ୧୩ ।

ଦେଖିଲେ ଅର୍ଜୁନ ବହୁ ପ୍ରକାରେ ବିଭକ୍ତ ।
ଏକସ୍ଥାନେ ଅବସ୍ଥିତ ସମସ୍ତ ଜଗତ ॥

ତତଃ ସ ବିସ୍ମୟାବିଷ୍ଟୋ ହୃଷ୍ଟରୋମା ଧନଞ୍ଜୟଃ ।
ପ୍ରଣମ୍ୟ ଶିରସା ଦେବଂ କୃତାଞ୍ଜଳିରଭାଷତ । ୧୪ ।

ରୂପ ଦର୍ଶନ କରି ପାର୍ଥ । ହେଲେ ବିସ୍ମିତ ପୁଲକିତ ॥
ଶ୍ରୀକୃଷ୍ଣ ପାଦପଦ୍ମେ ପଡ଼ି । ବୋଇଲେ ଦୁହିଁ କର ଯୋଡ଼ି ॥

ଅର୍ଜୁନ ଉବାଚ ।

ପଶ୍ୟାମି ଦେବାଂସ୍ତବ ଦେବ ଦେହେ
ସର୍ବାଂସ୍ତଥାଭୂତବିଶେଷସଙ୍ଘାନ୍ ।
ବ୍ରହ୍ମାଣମୀଶଂ କମଳାସନସ୍ଥ-
ମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ ॥ ୧୫ ॥

ହେ ଦେବ ଦେବ ତୁମ୍ଭ ଦେହେ । ଦେଖିଲି ଦେବତା ସମୂହେ ॥
ଅଣ୍ଡଜ ଆଦି ଜରାୟୁଜ । ଉଦ୍ଭିଦ ପ୍ରଭୃତି ସ୍ୱେଦଜ ॥
ପଦ୍ମ ଆସନେ ପିତାମହ । ଉରଗ ମହର୍ଷି ସମୂହ ॥

ଅନେକବାହୂଦରବକ୍ତ୍ରନେତ୍ରଂ
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପଂ ।
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ

ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପଂ ॥୧୬॥

ଦେଖିଲି ଅନେକ ଉଦର । ବାହୁ ନୟନ ପାଦ ଶିର ॥
ନ କଳି ପାରଇ ଅନ୍ତ । କାହିଁ ବା ଆଦି କାହିଁ ମଧ୍ୟ ॥

କିରୀଟିନଂ ଗଦିନଂ ଚକ୍ରିଣଞ୍ଚ
ତେଜୋରାଶିଂ ସର୍ବତୋ ଦୀପ୍ତିମନ୍ତଂ ।
ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତା-
ଦ୍ଦୀପ୍ତାନଳାର୍କଦ୍ୟୁତିମପ୍ରମେୟଂ ॥୧୭॥

ତୁମ୍ଭକୁ କିରୀଟଧାରୀ ଗଦା ଚକ୍ରଧାରୀ ।
ଦୀପ୍ତିମନ୍ତ ତେଜପୁଞ୍ଜ ହୁତାଶନ ପରି ॥
ମହାତେଜୋବନ୍ତ ଜଣି ମାର୍ତ୍ତଣ୍ଡ ତେଜକୁ ।
ଅପ୍ରମେୟରୂପବନ୍ତ ଦେଖୁଛି ତୁମ୍ଭକୁ ॥

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା
ସନାତନସ୍ତ୍ୱଂ ପୁରୁଷୋ ମତୋ ମେ ॥୧୮॥

ତୁମ୍ଭେ ପରବ୍ରହ୍ମ ବିଶ୍ୱସାର ଆଶ୍ରୟ ।
ଅନାଦି ପୁରୁଷ ନିତ୍ୟ ପୁଣି ସର୍ବମୟ ॥

ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟ
ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରଂ ।
ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ
ସ୍ୱତେଜସା ବିଶ୍ୱମିଦଂ ତପନ୍ତଂ ॥୧୯॥

ତୁମ୍ଭର ନାହିଁ ଆଦି ଅନ୍ତ । ଉତ୍ପତ୍ତି ସ୍ଥିତି ବୀର୍ଯ୍ୟବନ୍ତ ।
ଅନନ୍ତ ବାହୁ ମହାବୀର୍ଯ୍ୟ । ତୁମ୍ଭର ନେତ୍ର ଚନ୍ଦ୍ର ସୂର୍ଯ୍ୟ ॥
ତୁମ୍ଭର ମୁଖରୁ ସତତ । ଜ୍ୱଳନ ହେଉଛି ପ୍ରତାପ ।

ବ୍ୟାପ୍ ତେଜରେ ସଂସାର । ସମସ୍ତ କର ନିରନ୍ତର ॥

ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି
ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ ।
ଦୃଷ୍ଟ୍ୱାଦ୍ଭୁତଂ ରୂପମିଦଂ ତବୋଗ୍ରଂ
ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ ॥୨୦॥

ହେ ମଧୁସୂଦନ ତୁମ୍ଭେ ହେଲେହେଁ ଏକାକୀ ।
ପୃଥ୍ୱୀ ଆକାଶ ଦିଗ ରଖିଅଛ ଢାଙ୍କି ॥
ତୁମ୍ଭର ଭୀଷଣ ରୂପ କରି ଦରଶନ ।
ବ୍ୟଥିତ ହୁଅନ୍ତି ଜଗତର ଲୋକଗଣ ॥

ଅମୀ ହି ତ୍ୱାଂ ସୁରସଂଘା ବିଶନ୍ତି
କେଚିଦ୍ଭୀତାଃ ପ୍ରାଞ୍ଜଲୟୋ ଗୃଣନ୍ତି ।
ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଂଘାଃ
ସ୍ତୁବନ୍ତିତ୍ୱାଂସ୍ତୁତିଭିଃ ପୁଷ୍କଳାଭିଃ ॥୨୧॥

ଶଙ୍କିତ ହୋଇ ସୁରଗଣ । ତୁମ୍ଭରେ ପଶୁଛନ୍ତି ସର୍ବେ ।
ଥୋକେ ବୋଲନ୍ତି ଯୋଡ଼ି କର । ଆମ୍ଭମାନଙ୍କୁ ରକ୍ଷା କର ।
ମହର୍ଷିଗଣ ବୋଲି ସ୍ୱସ୍ତି । ତୁମ୍ଭକୁ କରୁଛନ୍ତି ସ୍ତୁତି ॥

ରୁଦ୍ରା ଦିତ୍ୟା ବସବୋ ଯେ ଚ ସାଧ୍ୟା
ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।
ଗନ୍ଧର୍ବଯକ୍ଷାସୁରସିଦ୍ଧସଂଘା
ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ । ୨୨ ।

ଆଦିତ୍ୟଗଣ ରୁଦ୍ରଗଣ । ବିଶ୍ୱଦେବାଦି ବସୁଗଣ ।
ଗନ୍ଧର୍ବଗଣ ସାଧ୍ୟଗଣ । ଅସୁରଗଣ ପିତୃଗଣ ।
ଅଶ୍ୱିନୀକୁମାରେ ସହିତ । ଦେଖନ୍ତି ହୋଇଣ ବିସ୍ମିତ ॥

ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ

ମହାବାହୋ ବହୁବାହୂରୁପାଦଂ ।
ବହୂଦରଂ ବହୁଦଂଷ୍ଟ୍ରାକରାଳଂ
ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହଂ । ୨୩ ।

ଦେଖୁଛନ୍ତି ଗୋବିନ୍ଦ ଯଦୁନାଥ । ଅନେକ ଲୋକଙ୍କ ସହିତ ॥
ତୁମ୍ଭର ବହୁତ ନୟନ । ଅନେକ ବାହୁ ଯେ ଚରଣ ॥
ଅନେକ ଦେଖୁଛି ଉଦର । ବହୁତ ଦନ୍ତ ଭୟଙ୍କର ॥
ଏରୂପ ଦେଖି ହେ ଅନନ୍ତ । ଜଗତ ହେଉଛି ବ୍ୟଥିତ ॥

ନଭଃସ୍ପୃଶଂ ଦୀପ୍ତମନେକବର୍ଣ୍ଣଂ
ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରଂ ।
ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା
ଧୃତିଂ ନ ବିନ୍ଦାମି ଶମଞ୍ଚ ବିଷ୍ଣୋ । ୨୪ ।

ତୁମ୍ଭର ବହୁତ ବଦନ । ବ୍ୟାପିଛି ପୃଥ୍ୱୀ ଗଗନ ॥
ବିଶାଳ ଲୋଚନ ପ୍ରଦୀପ୍ତ । ଦେଖି ମୁଁ ହେଉଛି ସନ୍ତପ୍ତ ॥

ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି
ଦୃଷ୍ଟ୍ୱୈବ କାଳାନଳସନ୍ନିଭାନି ।
ଦିଶୋ ନ ଜାନେ ନ ଲଭେ ଚ ଶର୍ମ
ପ୍ରସୀଦ ଦେବେଶ ଜଗନ୍ନିବାସ । ୨୫ ।

ହେ ପ୍ରଭୁ ଜଗତନିବାସ । ମୋପ୍ରତି ହେଉନ୍ତୁ ସନ୍ତୋଷ ॥
ତୁମ୍ଭର କାଳାଗ୍ନି ସମାନ । ଭୀଷଣ କରାଳ ବଦନ ॥
ହେଉଛି ମୁହିଁ ଦେଖି ଭୀତ । ସନ୍ତୋଷ ଲଭୁ ନାହିଁ ଚିତ୍ତ ॥

ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ
ସର୍ବେ ସହୈବାବନିପାଳସଙ୍ଘୈଃ ।
ଭୀଷ୍ମୋ ଦ୍ରୋଣଃ ସୂତପୁତ୍ରସ୍ତଥାସୌ
ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ । ୨୬ ।

ଭୀଷ୍ମ ଦ୍ରୋଣ କର୍ଣ୍ଣ ଧୃତରାଷ୍ଟ୍ର ପୁତ୍ରମାନେ ।
ଆମ୍ଭ ପକ୍ଷ ଥୋକେ ଯୋଦ୍ଧା ନୃପାଳଗଣେ ॥
ଶୀଘ୍ର ତୁମ୍ଭ ଭୟଙ୍କର ମୁଖରେ ପ୍ରବେଶ ।
ଦନ୍ତବାଟ ଦେଖନ୍ତି ମୁର୍ଦ୍ଧ ଚୂର୍ଣ୍ଣେ ହୃଷୀକେଶ ॥

ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି
ଦଂଷ୍ଟ୍ରାକରାଳାନି ଭୟାନକାନି ।
କେଚିଦ୍ୱିଲଗ୍ନା ଦଶନାନ୍ତରେଷୁ
ସନ୍ଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ । ୨୭ ।

ଧୃତରାଷ୍ଟ୍ର ପୁତ୍ରମାନେ ବୋଲାଇ ଯାବନ୍ତ ।
ତୁମ୍ଭ ମୁଖ ମଧ୍ୟେ କରୁଅଛନ୍ତି ଗମନ ॥
କାହା କାହା ଶିର ହୋଇ ଯାଇଅଛି ଚୂର୍ଣ୍ଣ ।
ଥୋକେ ହୋଇଛନ୍ତି ତୁମ୍ଭ ଦନ୍ତରେ ସଲଗ୍ନ ॥

ଯଥା ନଦୀନାଂ ବହବୋଽମ୍ବୁବେଗାଃ
ସମୁଦ୍ରମେବାଭିମୁଖା ଦ୍ରବନ୍ତି ।
ତଥା ତବାମୀ ନରଲୋକବୀରା-
ବିଶନ୍ତି ବକ୍ତ୍ରାଣ୍ୟଭିତୋ ଜ୍ୱଲନ୍ତି । ୨୮ ।

ନଦୀର ପ୍ରବାହ ଯେମନ୍ତ । ସାଗରେ ହୁଡ଼ର [illegible] ॥
ତେମନ୍ତ ଏହି ଯୋଦ୍ଧା ଲୋକେ । ପ୍ରବେଶୁଛନ୍ତି ତୁମ୍ଭ ମୁଖେ ।

ଯଥା ପ୍ରଦୀପ୍ତଂ ଜ୍ୱଲନଂ ପତଙ୍ଗା-
ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।
ତଥୈବ ନାଶାୟ ବିଶନ୍ତି ଲୋକା-
ସ୍ତବାପି ବକ୍ତ୍ରାଣି ସମୃଦ୍ଧବେଗାଃ । ୨୯ ।

ପତଙ୍ଗ ଯେମନ୍ତେ ଦୀପରେ । [illegible] ଅନଳ ଶିଖାରେ ॥
ତେମନ୍ତ ରୂପେ ଏହି ଲୋକେ । ଯାଉଁଅଛନ୍ତି ତୁମ୍ଭ ମୁଖେ ॥

ଲେଲିହ୍ୟସେ ଗ୍ରସମାନଃ ସମନ୍ତା
ଲ୍ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଲଦ୍ଭିଃ ।
ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ
ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ । ୩୦ ।

ପ୍ରଦୀପ୍ତ ମୁଖରେ ତୁମ୍ଭେ କରିଣ ବିସ୍ତାର ।
ଏହି ଯୋଦ୍ଧା ବୀରଗଣେ କରୁଛ ସଂହାର ॥
ତୁମ୍ଭର ପ୍ରଖର ଦୀପ୍ତି ତେଜ ପ୍ରଭାବରେ ।
ସନ୍ତାପିତ କରୁଅଛ ବିଶ୍ୱ ନିକରରେ ॥ ୧

ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ-
ନମୋଽସ୍ତୁ ତେ ଦେବବର ପ୍ରସୀଦ ।
ବିଜ୍ଞାତୁମିଚ୍ଛାମି ଭବନ୍ତମାଦ୍ୟଂ
ନ ହି ପ୍ରଜାନାମି ତବ ପ୍ରବୃତ୍ତିଂ । ୩୧ ।

ହେ କୃଷ୍ଣ ତୁମ୍ଭଙ୍କୁ କରୁଅଛି ନମସ୍କାର ।
ହୁଅ ସୁପ୍ରସନ୍ନ ମୋହପ୍ରତି ଦାମୋଦର ॥
ତୁମ୍ଭ ବୃତ୍ତାନ୍ତ ହେବା ପାଇଁ ଅବଗତ ।
ମୋହର ହୋଇଛି ଅଭିଳାଷ ଯେ ନିତାନ୍ତ ॥

ଭଗବାନୁବାଚ ।

କାଳୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ-
ଲ୍ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।
ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ
ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ । ୩୨ ।

ଶୁଣହେ ପାର୍ଥ ଯେଉଁ ତୁମ୍ଭେ ଜିଜ୍ଞାସିଲ ବେଶ ।
ପ୍ରବୃତ୍ତ ହୋଇଛି ସର୍ବ କରିବାକୁ ନାଶ ॥
ସମ୍ପ୍ରତି ତୁମ୍ଭଙ୍କୁ ଛାଡ଼ି ଯେତେକ ବଳିଷ୍ଟ ।

ତୁମ୍ଭର କଶଲ ଥାଏ ହେବେ ସର୍ବ ନଷ୍ଟ
ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ
ଜିତ୍ୱା ଶତ୍ରୂନ୍ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧଂ ।
ମୟୈବୈତେ ନିହତାଃ ପୂର୍ବମେବ
ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ । ୩୩ ।
ଅତଏବ ତୁମ୍ଭେ ବାକ୍ୟ ଶୁଣ ହେ କୌନ୍ତେୟ ।
ଶୀଘ୍ର ଯାଇ କର ଶତ୍ରୁଗଣେ ପରାଜୟ ॥
ଯଶୋଲାଭ ରାଜ୍ୟଲାଭ କର ସନ୍ତୋଷରେ ।
ଅବହେଳା କର ନାହିଁ ନେହ ଏ କଥାରେ ॥
ଏମାନଙ୍କୁ ଆମ୍ଭେ ପୂର୍ବେ କରିଛୁଁ ନିହତ ।
ସମ୍ପ୍ରତି ହେବଟି ତୁମ୍ଭେ କେବଳ ନିମିତ୍ତ ॥
ଦ୍ରୋଣଞ୍ଚ ଭୀଷ୍ମଞ୍ଚ ଜୟଦ୍ରଥଞ୍ଚ
କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।
ମୟା ହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା
ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ । ୩୪ ।
ତୁମ୍ଭେ ଭୀଷ୍ମ ଦ୍ରୋଣ ଯଥା ପୁଣ ଜୟଦ୍ରଥ ।
ଏମାନଙ୍କୁ ବଧିଅଛୁଁ ହୁଅ ନାହିଁ ଭୀତ ॥
ଅତଏବ ପୁନଃ ପୁନଃ ବୋଲୁଛୁଁ ତୁମ୍ଭଙ୍କୁ ।
ସଂଗ୍ରାମେ ପ୍ରବେଶି ବଧ କର ଏମାନଙ୍କୁ ॥

ସଞ୍ଜୟ ଉବାଚ ।

ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ
କୃତାଞ୍ଜଲିର୍ବେପମାନଃ କିରୀଟୀ ।
ନମସ୍କୃତ୍ୱା ଭୂୟ ଏବାହ କୃଷ୍ଣଂ
ସଗଦ୍ଗଦଂ ଭୀତଭୀତଃ ପ୍ରଣମ୍ୟ । ୩୫ ।

ଶ୍ରୀମଧୁସୂଦନ ବାକ୍ୟ ଶୁଣି ଫାଲଗୁନ ॥
ବୋଇଲେ କମ୍ପିତ ଦେହେ ଯୋଡ଼ି ବେନ ପାଣି ।

ଅର୍ଜ୍ଜୁନ ଉବାଚ ।

ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା
ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।
ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି
ସର୍ବେ ନମସ୍ୟନ୍ତି ଚ ସିଦ୍ଧସଙ୍ଘାଃ । ୩୬ ।

ଅହେ ହୃଷୀକେଶ ତୁମ୍ଭ ନାମର କୀର୍ତ୍ତନ ।
ତୁଅନ୍ତି ଜଗତ ଶୁଣି ଆନନ୍ଦ ମନ ॥
ପଳାଇ ଯାଉଛନ୍ତି ଭୟେ ସର୍ବ ନିଶାଚର ।
କରନ୍ତି ବିନମ୍ର ଭାବେ ସିଦ୍ଧେ ନମସ୍କାର ॥

କସ୍ମାଚ୍ଚ ତେ ନ ନମେରନ୍ମହାତ୍ମନ୍
ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ ।
ଅନନ୍ତଦେବେଶ ଜଗନ୍ନିବାସ
ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍ । ୩୭ ।

ହେ ଅନନ୍ତ ହେ ଦେବେଶ ଅହେ ଦାମୋଦର ।
ଭଗବାନ ବ୍ରହ୍ମାଠାରୁ ତୁମ୍ଭେ ଗୁରୁତର ॥
ତାହାଙ୍କର ଆଦି କର୍ତ୍ତା ଅବିନାଶୀ ବ୍ରହ୍ମ ।
ତେଣୁ ବ୍ରହ୍ମା ତୁମ୍ଭଙ୍କୁ ଯେ କରନ୍ତି ପ୍ରଣାମ ॥

ତ୍ୱମାଦିଦେବଃ ପୁରୁଷଃ ପୁରାଣ-
ସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ।
ବେତ୍ତାସି ବେଦ୍ୟଞ୍ଚ ପରଞ୍ଚ ଧାମ
ତ୍ୱୟା ତତଂ ବିଶ୍ୱମନନ୍ତରୂପ । ୩୮ ।

ହେ ଅନନ୍ତ ଆଦି ଦେବ ପୁରାଣ ପୁରୁଷ ।

ତୁମ୍ଭଠାରୁ ଉତ୍ପତ୍ତି ହୋଇଅଛୁ ସର୍ବ ॥
ତୁମ୍ଭେ ଅଟ ବେତ୍ତା ବେଦ୍ୟ ତୁମ୍ଭେ ଅଟ ଦେଳ ।
ତୁମ୍ଭେ ଏକମାତ୍ର ସର୍ବ ଜୀବଙ୍କ ଆଶ୍ରୟ ॥

ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ
ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।
ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ
ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ । ୩୯ ।

ତୁମ୍ଭେ ଅଗ୍ନି ଯମ ବାୟୁ ଚନ୍ଦ୍ର ପ୍ରଜାପତି ।
ବରୁଣ ପ୍ରପିତାମହ ଜଗତର ପତି ॥
ତୁମ୍ଭ ପଦେ ବାରମ୍ବାର କରଇଁ ନମସ୍କାର ।
ପୁଣି ତୁମ୍ଭ ପଦେ କରୁଅଛୁ ନମସ୍କାର ॥

ନମଃ ପୁରସ୍ତାଦଥ ପୃଷ୍ଠତ-
ସ୍ତେ ନମୋଽସ୍ତୁ ତେ ସର୍ବତ ଏବ ସର୍ବ ।
ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ
ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ । ୪୦ ।

ତୁମ୍ଭ ଚତୁର୍ଦ୍ଦିଗେ କରୁଅଛୁ ନମସ୍କାର ।
ତୁମ୍ଭର ପଶ୍ଚାତେ କରୁଅଛୁ ନମସ୍କାର ॥
ତୁମ୍ଭେହିଁ ଅନନ୍ତ ବୀର୍ଯ୍ୟ ବିକ୍ରମ ଅନନ୍ତ ।
ସର୍ବ ଚରାଚରେ ତୁମ୍ଭେ ରହିଅଛ ବ୍ୟାପ୍ତ ॥
ସର୍ବ କାଳେ ସର୍ବ ସ୍ଥାନେ ତୁମ୍ଭେ ବର୍ତ୍ତମାନ ।
ସର୍ବରୂପୀ ବୋଲି ଲୋକେ କରନ୍ତି କୀର୍ତ୍ତନ ॥

ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ
ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ

ମୟା ପ୍ରମାଦାତ୍ ପ୍ରଣୟେନ ବାପି । ୪୧ ।
ଅହେ କୃଷ୍ଣ ଅହେ ସଖା ଅହେ ଯଦୁନାଥ ।
ତୁମ୍ଭର ମହିମା ମୁହିଁ ନ ଥିଲି ବିଦିତ ॥
ତୁଚ୍ଛ ବନ୍ଧୁ ମଣି କରିଅଛି ବ୍ୟବହାର ।
ପ୍ରାର୍ଥନା କରୁଛି ଅପରାଧ କ୍ଷମା କର ॥
ଯଚ୍ଚାବହାସାର୍ଥମସତ୍କୃତୋଽସି
ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥ ବାପ୍ୟଚ୍ୟୁତ ତତ୍ସମକ୍ଷଂ
ତତ୍ କ୍ଷାମୟେ ତ୍ୱାମହମପ୍ରମେୟଂ । ୪୨ ।
ହେ କୃଷ୍ଣ ଏକାକୀ ଅବା ବନ୍ଧୁଙ୍କ ମଧ୍ୟରେ ।
ବିହାର ଶୟନ କିମ୍ବା ଭୋଜନ କଥାରେ ॥
ପରିହାସେ କେତେ କରିଅଛି ତିରସ୍କାର ।
ହେ କରୁଣାମୟ ମୋର ଦୋଷ କ୍ଷମା କର ॥
ପିତାଽସି ଲୋକସ୍ୟ ଚରାଚରସ୍ୟ
ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍ ।
ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ-
ଲୋକତ୍ରୟେଽପ୍ୟପ୍ରତିମପ୍ରଭାବଃ । ୪୩ ।
ସ୍ଥାବର ଜଙ୍ଗମାତ୍ମକ ଜଗତର ପିତା ।
ତୁମ୍ଭେ ଶ୍ରେଷ୍ଠ ପୂଜ୍ୟ ଗୁରୁ ତ୍ରିଲୋକ ଦେବତା ॥
ତୁମ୍ଭଠାରୁ ବଳବନ୍ତ ନାହିଁ କେହି ଜଣେ ।
ଅଥବା ନାହିଁ ଯେ କେହି ତୁମ୍ଭର ସମାନେ ॥
ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ
ପ୍ରସାଦୟେ ତ୍ୱାମହମୀଶମୀଡ୍ୟଂ ।
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ

ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢ଼ୁଂ । ୪୪ ।
ତୁମ୍ଭ ଚରଣରେ କରୁଅଛି ଦଣ୍ଡବତ ।
ମୋର ଅପରାଧ କ୍ଷମା କର ଯଦୁନାଥ ॥
ପୁତ୍ର ଅପରାଧ ଯେବେ କ୍ଷମା କରେ ପିତା ।
ପ୍ରିୟତମା ଭାର୍ଯ୍ୟା ଦୋଷ କ୍ଷମା କରେ ଭର୍ତ୍ତା ॥
ସେହିରୂପ ତୁମ୍ଭେ ମୋରପ୍ରତି କୃପା କର ।
ସର୍ବ ଅପରାଧ କ୍ଷମା କର ଚକ୍ରଧାର ॥
ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା
ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।
ତଦେବ ମେ ଦର୍ଶୟ ଦେବ ରୂପଂ
ପ୍ରସୀଦ ଦେବେଶ ଜଗନ୍ନିବାସ । ୪୫ ।
ତୁମ୍ଭର ଅପୂର୍ବ ରୂପ କରି ନିରୀକ୍ଷଣ ।
ପ୍ରସନ୍ନ ହୋଇଛି ଆହେ ଶ୍ରୀମଧୁସୂଦନ ॥
ମାତ୍ର ମନେ ହୋଇଅଛି ଭୟର ସଞ୍ଚାର ।
ଅତଏବ କୃପା କରି ପୂର୍ବ ରୂପ ଧର ॥
କିରୀଟିନଂ ଗଦିନଂ ଚକ୍ରହସ୍ତ
ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।
ତେନୈବ ରୂପେଣ ଚତୁର୍ଭୁଜେନ
ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ । ୪୬ ।
ତୁମ୍ଭ ଗଦା ଚକ୍ରଧାରୀ ଚତୁର୍ଭୁଜ ମୂର୍ତ୍ତି ।
ଦେଖିବାକୁ ଇଚ୍ଛା କରୁଅଛି ଯଦୁପତି ॥
ଆହେ ବିଶ୍ୱରୂପ ଆହେ ଜଗତ କାରଣ ।
କୃପା କରି ସେହି ମୂର୍ତ୍ତି କରନ୍ତୁ ଧାରଣ ॥

ଶ୍ରୀଭଗବାନୁବାଚ ।

ମୟା ପ୍ରସନ୍ନେନ ତବାର୍ଜୁନେଦଂ
ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍ ।
ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ
ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବଂ । ୪୭ ।

ହେ ଅର୍ଜୁନ ତୁମ୍ଭେ ଯୋଗମାୟା ପ୍ରଭାବରେ ।
ପ୍ରକାଶ କଲୁଁ ଯେ ବିଶ୍ୱରୂପ ତୁମ୍ଭଂଠାରେ ।
ପରମ ଅନନ୍ତରୂପ ଅଟେ ଫାଲଗୁନ ।
ତୁମ୍ଭ ବିନା କେହୁ କର ନାହିଁ ଦରଶନ ॥

ନ ବେଦଯଜ୍ଞାଧ୍ୟୟନୈର୍ନ ଦାନୈର୍ନ-
ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
ଏବଂ ରୂପଃ ଶକ୍ୟୋଽହଂ ନୃଲୋକେ
ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର । ୪୮ ।

ବେଦ ଅଧ୍ୟୟନ ଦାନ ଯଜ୍ଞ ଅନୁଷ୍ଠାନ ।
କଠୋର ତପସ୍ୟାମାନ କର ତୁମ୍ଭେ ଆଚରଣ ॥
ଏହୁ ତାମ୍ଭ ବିଶ୍ୱରୂପ କେହୁ ଦେଖି ନାହିଁ ।
ଦେଖାଇଲୁଁ ତୁମ୍ଭକୁ ଯେ ସ୍ନେହଭାବ ବହି ॥

ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ
ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ମମେଦଂ ।
ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ
ତଦେବ ମେ ରୂପମିଦଂ ପ୍ରପଶ୍ୟ । ୪୯ ।

ହୁଅ ନାହିଁ ବିମୋହିତ ଭୟରେ କାତର ।
ଅମ୍ଭର ଅନନ୍ତ ରୂପ ଦେଖ ପୁନବାର ॥

ସଞ୍ଜୟ ଉବାଚ ।

ଇତ୍ୟର୍ଜୁନଂ ବାସୁଦେବସ୍ତଥୋକ୍ତ୍ୱା
ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
ଆଶ୍ୱାସୟାମାସ ଚ ଭୀତମେନଂ
ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା । ୫୦ ।

ଏହି ଅର୍ଜୁନଙ୍କୁ କୃପା କରି ଦାମୋଦର ।
ଦେଖାଇଲେ ନିଜ ସ୍ୱରୂପ ପ୍ରକାର ॥

ଅର୍ଜୁନ ଉବାଚ ।

ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ ତବ ସୌମ୍ୟଂ ଜନାର୍ଦ୍ଦନ ।
ଇଦାନୀମସ୍ମି ସଂବୃତ୍ତଃ ସଚେତାଃ ପ୍ରକୃତିଂ ଗତଃ । ୫୧ ।

ତୁମ୍ଭର ମାନୁଷ ରୂପ କରି ନିରୀକ୍ଷଣ ।
ଆନନ୍ଦିତ ହେଲି ଅହେ ଶ୍ରୀମଧୁସୂଦନ ॥

ଶ୍ରୀଭଗବାନୁବାଚ ।

ସୁଦୁର୍ଦ୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ ।
ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଙ୍କ୍ଷିଣଃ । ୫୨ ।

ନିତାନ୍ତ ଦୁର୍ଲ୍ଲଭ ଯାହା ଅହେ ଫାଲଗୁନ ।
ଦୁର୍ନିରୀକ୍ଷ ବିଶ୍ୱରୂପ କଲ ଦରଶନ ॥
ସର୍ବଦା କରନ୍ତି ଇଚ୍ଛା ସ୍ୱର୍ଗେ ଦେବଗଣେ ।
ଆମ୍ଭର ଏ ବିଶ୍ୱରୂପ ଦେଖିବା କାରଣେ ॥

ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା ।
ଶକ୍ୟ ଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା । ୫୩ ।

କେହୁ ପଢ଼ି ବେଦ କରି ଯଜ୍ଞ ଅନୁଷ୍ଠାନ ।
ତପୋଦାନ ଆଦି କର୍ମ କରି ଆଚରଣ ॥
ଆମ୍ଭର ଏରୂପ କରି ନାହିଁ ଦରଶନ ।

ଯେରୂପ ଦେଖିଲ ତାକ ତାହେ ତ ରଜନ ॥

ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂବିଧୋଽର୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଞ୍ଚ ତତ୍ତ୍ୱେନ ପ୍ରବେଷ୍ଟୁଞ୍ଚ ପରନ୍ତପ । ୫୪ ।

ମଦେକନିଷ୍ଠ ଯାର ଭକ୍ତି । ଏରୂପ ଦେଖେ ସେହି ବ୍ୟକ୍ତି ।
ଏ ବିଶ୍ୱରୂପ ହେଲେ ଜ୍ଞାତ । ତାମ୍ଭକୁ ହୁଏ ନିଶ୍ଚେ ପ୍ରାପ୍ତ ॥

ମତ୍କର୍ମକୃନ୍ମତ୍ପରମୋ ମଦ୍ଭକ୍ତଃ ସଙ୍ଗବର୍ଜିତଃ ।
ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ । ୫୫ ।

ଯେ କରେ କର୍ମ ଅନୁଷ୍ଠାନ । ତାମ୍ଭର ଭକ୍ତ ସେହି ଜାଣ ।
ପୁତ୍ର କଳତ୍ରେ ମାୟା ନାହିଁ । ବିବାଦ କେବେ ନ କରଇ ।
ଅମ୍ଭେ ତାହାର ପୁରୁଷାର୍ଥ । ତାମ୍ଭକୁ ହୁଏ ସେହି ପ୍ରାପ୍ତ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ବିଶ୍ୱରୂପଦର୍ଶନୋ ନାମୈକାଦଶୋଽଧ୍ୟାୟଃ ।

—o—

## ଦ୍ୱାଦଶୋଽଧ୍ୟାୟଃ ।

ଅର୍ଜୁନ ଉବାଚ ।

ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ ।
ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ । ୧ ।

ଯେ ଲୋକ ଭକ୍ତିର ଚିତ୍ତରେ । ପୂଜଇ ତୁମ୍ଭ ଶ୍ରୀପଦ୍ମରେ ।
ଅଥବା ଯେ ପୂଜେ ବ୍ରହ୍ମକୁ । ଅକ୍ଷୟ ଅବ୍ୟୟ ରୂପକୁ ॥
କେ ଶ୍ରେଷ୍ଠ ଯୋଗୀ ଏଜଗତେ । କରୁଣା କରି ବୋଲ ମୋତେ

ଭଗବାନୁବାଚ ।

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ । ୨ ।
ମୋତେ ମନ ଦେଇ ଅନୁରକ୍ତ । ଯେ ପୂଜା କରଇ ସତତ ।
ଯୋଗିଙ୍କ ମଧ୍ୟେ ସେ ପ୍ରଧାନ । ନିଶ୍ଚୟ ଜାଣିବ ଅର୍ଜୁନ ॥
ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଞ୍ଚ କୂଟସ୍ଥମଚଳଂ ଧ୍ରୁବଂ । ୩ ।
ସନ୍ନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ । ୪ ।
ସର୍ବ ଭୂତେ ସମଦୃଷ୍ଟି ଅଟଇ ଯାହାର ।
ସର୍ବ ଭୂତେ ହିତ ଇଚ୍ଛା କରେ ନିରନ୍ତର ॥
ଜିତେନ୍ଦ୍ରିୟ ହୋଇ ଯେବା ଚିନ୍ତଇ ସତତ ।
ଅନିର୍ଦ୍ଦେଶ୍ୟ ସର୍ବବ୍ୟାପୀ ଅକ୍ଷୟ ଅବ୍ୟକ୍ତ ॥
କୂଟସ୍ଥ ଅଚଳ ନିତ୍ୟ ହ୍ରାସ ବୃଦ୍ଧି ଶୂନ୍ୟ ।
ପରମ ପୁରୁଷ ନିତ୍ୟ ବ୍ରହ୍ମ ସନାତନ ॥
ଏମନ୍ତ ପରମବ୍ରହ୍ମେ ଲଗେ ଯେବା ଲୟ ।
ଚରମେ ମୋତେ ଲଭ ଲଭଇ ନିଶ୍ଚୟ ॥
କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାଂ ।
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ । ୫ ।
ଦେହାଭିମାନୀ କଷ୍ଟ ସହି । ଅବ୍ୟକ୍ତ ଗତିକୁ ଲଭଇ ।
ଅବ୍ୟକ୍ତ ବ୍ରହ୍ମେ ଯେ ଆସକ୍ତ । ସେ କଷ୍ଟ ଲଭଇ ନିଶ୍ଚିତ ॥
ଯେ ତୁ ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରାଃ ।
ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ । ୬ ।
ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ ।
ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତଚେତସାଂ । ୭ ।
ଆମ୍ଭକୁ ଯେମାନେ କର୍ମ କରନ୍ତି ଅର୍ପଣ ।

ପୁଣି ହୋଇ ଅମପ୍ରତ ଚକି ପରାୟଣ ॥
କରନ୍ତି ତାହାଙ୍କୁ ଉପାସନା କରନ୍ତର ।
ତାହାଙ୍କୁ କରୁଁ ମୁଁ ସଂସାରସିନ୍ଧୁ ପାରୁଁ ଉଦ୍ଧାର ॥

ମୟ୍ୟେବ ମନ ଆଧତ୍ସ୍ୱ ମୟି ବୁଦ୍ଧିଂ ନିବେଶୟ ।
ନିବସିଷ୍ୟସି ମୟ୍ୟେବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ ॥ ୮ ।

ତୁମ୍ଭେ ପ୍ରତି କର ଚିତ୍ତ ବୁଦ୍ଧିକୁ ନିବେଶ ।
ଦେହାନ୍ତେ କରିବ ନିଶ୍ଚେ ଅମ୍ଭଠାରେ ବାସ ॥

ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରଂ ।
ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ ॥ ୯ ।

ଯେବେ କରି ନ ପାରିବ ନିଜ ମନ ସ୍ଥିର ।
ସେଥିର ଉପାୟ ବୋଲୁଁ ଶୁଣ ମହାବୀର ॥
କରି ତେବେ ଯୋଗ ଅନୁସ୍ମରଣ ଅଭ୍ୟାସ ।
ଅମ୍ଭଙ୍କୁ ଲଭିବା ଯେବେ ଥାଏ ଅଭିଳାଷ ॥

ଅଭ୍ୟାସେଽପ୍ୟସମର୍ଥୋଽସି ମତ୍କର୍ମପରମୋ ଭବ ।
ମଦର୍ଥମପି କର୍ମାଣି କୁର୍ବନ୍ ସିଦ୍ଧିମବାପ୍ସ୍ୟସି ॥ ୧୦ ।

ଏଥିଁରେ ହେଲେ ଅସକତ । କର କୀର୍ତ୍ତନ ପୂଜା ବ୍ରତ ।
ସନ୍ତୋଷେ ତୁମ୍ଭେ ହେଲେ ମତ । ପାଇ ପାରିବ ସଦ୍‌ଗତି ॥

ଅଥୈତଦପ୍ୟଶକ୍ତୋଽସି କର୍ତ୍ତୁଂ ମଦ୍‌ଯୋଗମାଶ୍ରିତଃ ।
ସର୍ବକର୍ମଫଳତ୍ୟାଗଂ ତତଃ କୁରୁ ଯତାତ୍ମବାନ୍ ॥ ୧୧ ।

ଏଥିରେ ହେଲେ ଅସମର୍ଥ । ସମର୍ପି ଅମ୍ଭ ପ୍ରତି ଚିତ୍ତ ॥
ସମସ୍ତ କର୍ମ ଫଳ ତେଜ । ରହିବ ଅମ୍ଭ ନାମ ଭଜ ॥

ଶ୍ରେୟୋ ହି ଜ୍ଞାନମଭ୍ୟାସାତ୍ ଜ୍ଞାନାଦ୍ଧ୍ୟାନଂ ବିଶିଷ୍ୟତେ ।
ଧ୍ୟାନାତ୍ କର୍ମଫଳତ୍ୟାଗସ୍ତ୍ୟାଗାଚ୍ଛାନ୍ତିରନନ୍ତରଂ ॥ ୧୨ ।

ବିବେକ ହୀନ ଯେ ଅଭ୍ୟାସ । ତହିଁରେ ନାହିଁ ଫଳ ଲେଶ ।

ତାହାରୁ ଜ୍ଞାନ ଶ୍ରେଷ୍ଠତର । ଜ୍ଞାନୁଁ ଯେ ଧ୍ୟାନ ଶ୍ରେଷ୍ଠତର ॥
ଧ୍ୟାନଠାରୁ କର୍ମଫଳ ତ୍ୟାଗ । ସକଳୁଁ ଶ୍ରେଷ୍ଠ ମହାଭାଗ ॥
କର୍ମଫଳକୁ ଯେ ତେଜଇ । ଅବଶ୍ୟ ଶାନ୍ତିକୁ ଭଜଇ ॥

ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।
ନିର୍ମମୋ ନିରହଙ୍କାରଃ ସମଦୁଃଖସୁଖଃ କ୍ଷମୀ । ୧୩ ।
ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ ।
ମୟ୍ୟର୍ପିତମନୋବୁଦ୍ଧି ର୍ଯୋ ମେ ଭକ୍ତଃ ସ ମେ ପ୍ରିୟଃ । ୧୪ ।

ଯେ ଲୋକ ଭକ୍ତି ପରିପୂର୍ଣ୍ଣ । କୃପାଳୁ ମୈତ୍ର ଦ୍ୱେଷଶୂନ୍ୟ ॥
ମମତା ମାନ କ୍ଷମାଶୀଳ । ନିରହଙ୍କାରୀ ଯେ ସୁଶୀଳ ॥
ସୁଖ ଦୁଃଖରେ ସମଜ୍ଞାନ । ସର୍ବଦା ଥାଏ ସୁପ୍ରସନ୍ନ ॥
ଦୃଢ଼ନିଶ୍ଚୟ ଅପ୍ରମତ୍ତ । ଇନ୍ଦ୍ରିୟ ଯାର ବଶୀକୃତ ॥
ଆମ୍ଭରେ ସମର୍ପିଛି ମନ । ଆମ୍ଭର ପ୍ରିୟ ସେହି ଜନ ॥

ଯସ୍ମାନ୍ନୋଦ୍ୱିଜତେ ଲୋକୋ ଲୋକାନ୍ନୋଦ୍ୱିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍ୱେଗୈର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ ॥ ୧୫ ॥

ଯାହାଠାରୁ ଲୋକମାନେ ନୋହନ୍ତି ଉଦ୍ୱିଗ୍ନ ।
ଯେଉଁ ଲୋକ ମନୁଷ୍ୟଙ୍କୁ ନ କରେ ଉଦ୍ୱିଗ୍ନ ॥
ସ୍ୱାଭାବିକ ହର୍ଷୁଁ ଯେବା ହୋଇଅଛି ମୁକ୍ତ ।
ଅମର୍ଷ ଉଦ୍ୱିଗ୍ନ ଭୟ ଅସୂୟା ରହିତ ॥
ପୁଣି ଯେଉଁ ଲୋକ ସର୍ବ କାମନା ବିହୀନ ।
ସେ ଲୋକ ଆମ୍ଭର ପ୍ରିୟ ଜାଣିବ ଅର୍ଜ୍ଜୁନ ॥

ଅନପେକ୍ଷଃ ଶୁଚିର୍ଦକ୍ଷଃ ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ ॥ ୧୬ ॥

ନିଷ୍ପୃହ ଶୁଚି ଦକ୍ଷ ଜନ । ଅଥବା ପକ୍ଷପାତ ଶୂନ୍ୟ ॥
ସକର୍ମ କରମ ସମୂହ । ଯେ ତେଜେ ସେହି ଆମ୍ଭ ପ୍ରିୟ ॥

ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍କ୍ଷତି ।
ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ॥ ୧୭ ॥
ଦ୍ୱେଷ ବର୍ଜିତ ହର୍ଷ ଶୂନ୍ୟ । ପୁଣି ଯେ ଆକାଙ୍କ୍ଷା ବିହୀନ ॥
ପାପ ପୁଣ୍ୟକୁ କରି ତ୍ୟାଗ । ଭକ୍ତିରେ କରେ ମନୋଯୋଗ ॥
ସେ ଲୋକ ଅଟନ୍ତି ଆମ୍ଭ ପ୍ରିୟ । ଏକଥା ଜାଣିବ କୌନ୍ତେୟ ॥
ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ ।
ଶୀତୋଷ୍ଣ ସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ । ୧୮ ।
ଶତ୍ରୁ ମିତ୍ର ଶୀତ ଉଷ୍ଣ ମାନ ଅପମାନ ।
ସୁଖ ଦୁଃଖ ଆଦି ସର୍ବ ମଣଇ ସମାନ ॥
ସର୍ବ ବିଷୟରେ ଯେ ବା ସଙ୍ଗ ପରିତ୍ୟାଗୀ ।
ଆମ୍ଭର ଅତ୍ୟନ୍ତ ପ୍ରିୟ ଅଟେ ସେହି ଯୋଗୀ ॥
ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍ ।
ଅନିକେତଃ ସ୍ଥିରମତିର୍ଭକ୍ତିମାନ୍ ମେ ପ୍ରିୟୋ ନରଃ ॥ ୧୯ ॥
ନିନ୍ଦା ପ୍ରଶଂସାକୁ ଯେବା କରେ ତୁଲ୍ୟଜ୍ଞାନ ।
ଯଦୃଚ୍ଛିତ ଲାଭେ ଥାଏ ଆନନ୍ଦିତ ମନ ।
ନିରନ୍ତର ଏକ ସ୍ଥାନେ ନ କରନ୍ତି ବାସ ।
ସ୍ଥିର ଭକ୍ତି ସ୍ଥିର ମତି ଯେବଣ ପୁରୁଷ ॥
ବିଷୟ ବାସନା ତ୍ୟାଗ କରେ ଯେଉଁ ଜନ ।
ସେ ଲୋକ ଆମ୍ଭର ପ୍ରିୟ ଜାଣିବ ଅର୍ଜୁନ ॥
ଯେ ତୁ ଧର୍ମାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ ।
ଶ୍ରଦ୍ଦଧାନା ମତ୍ପରମା ଭକ୍ତାସ୍ତେଽତୀବ ମେ ପ୍ରିୟାଃ ॥ ୨୦ ॥
ମତ୍ପରାୟଣ ଶ୍ରଦ୍ଧାଶୀଳ । ତେଜିଣ ଦୁଷ୍କର୍ମ ସକଳ ।
ଧର୍ମ ଅମୃତ କରେ ପାନ । ସେ ଆମ୍ଭ ପ୍ରିୟ ହେ ଅର୍ଜୁନ ॥
ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟା-

ସିନ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଭକ୍ତିଯୋଗୋ ନାମ ଦ୍ୱାଦଶୋଽଧ୍ୟାୟଃ ।

---

ତ୍ରୟୋଦଶୋଽଧ୍ୟାୟଃ ।

ଅର୍ଜୁନ ଉବାଚ ।

ପ୍ରକୃତିଂ ପୁରୁଷଂ ଚୈବ କ୍ଷେତ୍ରଂ କ୍ଷେତ୍ରଜ୍ଞମେବ ଚ ।
ଏତଦ୍ବେଦିତୁମିଚ୍ଛାମି ଜ୍ଞାନଂ ଜ୍ଞେୟଞ୍ଚ କେଶବ ॥ ୧ ॥
କ୍ଷେତ୍ରଜ୍ଞ କ୍ଷେତ୍ର ଜ୍ଞାନ ଜ୍ଞେୟ । ପ୍ରକୃତି ପୁରୁଷ ବିଷୟ ॥
ଏସବ କରିବ ଶ୍ରବଣ । ବୋଲନ୍ତୁ ମୋତେ ଜନାର୍ଦ୍ଦନ ॥

ଭଗବାନୁବାଚ ।

ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ ।
ଏତଦ୍ୟୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞମିତି ତଦ୍ବିଦଃ ॥ ୨ ॥
ବୋଇଲେ କୃଷ୍ଣ ଅହେ ବୀର । କ୍ଷେତ୍ର ଅଟଇ ଏ ଶରୀର ॥
ଏଥିରେ ଅଛି ଯାର ଜ୍ଞାନ । କ୍ଷେତ୍ରଜ୍ଞ ବୋଲି ତାକୁ ଜାଣ ॥
କ୍ଷେତ୍ରଜ୍ଞଞ୍ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ ।
କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ ॥ ୨ ॥
କ୍ଷେତ୍ରଜ୍ଞ ଅମ୍ଭେ ସର୍ବ ଦେହେ । କ୍ଷେତ୍ରଜ୍ଞ କ୍ଷେତ୍ର ଏ ଉଭୟେ ॥
ଅଟେ ଯେ ବୈଲକ୍ଷଣ ଜ୍ଞାନ । ତାହାର ଅଭିପ୍ରାୟ ଜାଣ ॥
ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ଚ ଯଦ୍ବିକାରି ଯତଶ୍ଚ ଯତ୍ ।
ସ ଚ ଯୋ ଯତ୍ ପ୍ରଭାବଶ୍ଚ ତତ୍ ସମାସେନ ମେ ଶୃଣୁ ॥ ୩ ॥
ଏ କ୍ଷେତ୍ର ଯେତେକ ଧର୍ମଯୁକ୍ତ । ଇନ୍ଦ୍ରିୟ ବିକାର ସଂଯୁକ୍ତ ॥
ସଂଯୋଗେ ପୁରୁଷ ପ୍ରକୃତି । ଯେସର ହୁଅଇ ଉତ୍ପତ୍ତି ॥
ସ୍ଥାବର ଜଙ୍ଗମେ ଯେସର । ଥାଏ ପୃଥକ ନାମାଧର ॥

ଏହାର ସ୍ୱରୂପ ପ୍ରଭାବ । ବୋଲୁଛୁଁ ଶୁଣ ହେ ପାଣ୍ଡବ ॥

ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍ ।
ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍ଭିର୍ବିନିଶ୍ଚିତୈଃ ॥ ୫ ॥

ମହର୍ଷି ବଶିଷ୍ଠ ପ୍ରଭୃତ । ହେତୁ ବଶିଷ୍ଠ ନାନା ଶ୍ରୁତ ॥
ବୋଲନ୍ତି ତଟସ୍ଥ ଲକ୍ଷଣ । ଯହିଁ ଉତ୍ପତ୍ତି ଭୂତଗଣ ॥
ପୁଣି ଯେ ସ୍ୱରୂପ ଲକ୍ଷଣ । ଯହିଁରୁ ହୁଏ ବ୍ରହ୍ମଜ୍ଞାନ ॥
ଏଥିରେ କ୍ଷେତ୍ରର ବଖାଣ । କହିଅଛନ୍ତି ନିରୂପିତ ॥

ମହାଭୂତାନ୍ୟହଙ୍କାରୋ ବୁଦ୍ଧିରବ୍ୟକ୍ତମେବ ଚ ।
ଇନ୍ଦ୍ରିୟାଣି ଦଶୈକଞ୍ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ ॥ ୬ ॥

ପଞ୍ଚ ମହାଭୂତ ବୁଦ୍ଧି ଦଶ ବାହ୍ୟେନ୍ଦ୍ରିୟ ।
ଅହଙ୍କାର ମନ ପଞ୍ଚ ଇନ୍ଦ୍ରିୟ ବିଷୟ ॥

ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଙ୍ଘାତଶ୍ଚେତନା ଧୃତିଃ ।
ଏତତ୍ କ୍ଷେତ୍ରଂ ସମାସେନ ସବିକାରମୁଦାହୃତଂ ॥ ୭ ॥

ଇଚ୍ଛା ଦ୍ୱେଷ ସୁଖ ଦୁଃଖ ଦେହ ମନୋବୃତ୍ତି ।
ଏହି ସର୍ବ କ୍ଷେତ୍ର ଧର୍ମ ଧଇର୍ଯ୍ୟ ପ୍ରଭୃତି ॥
ଇନ୍ଦ୍ରିୟ ବିକାରଶାଳୀ ଏହି ଧର୍ମବାନ ।
କ୍ଷେତ୍ରଧର୍ମ ସଂକ୍ଷେପରେ କଲୁଁ ଯେ କୀର୍ତ୍ତନ ॥

ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜ୍ଜବଂ ।
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ ॥ ୮ ॥
ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଙ୍କାର ଏବ ଚ ।
ଜନ୍ମମୃତ୍ୟୁଜରାବ୍ୟାଧି ଦୁଃଖଦୋଷାନୁଦର୍ଶନଂ ॥ ୯ ॥
ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାରଗୃହାଦିଷୁ ।
ନିତ୍ୟଞ୍ଚ ସମଚିତ୍ତତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ ॥ ୧୦ ॥
ମୟି ଚାନନ୍ୟଯୋଗେନ ଭକ୍ତିରବ୍ୟଭିଚାରିଣୀ ।

ବିବିକ୍ତଦେଶସେବିତ୍ୱମର[illegible]ସଦି ॥ ୧୧ ॥
ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନଂ ।
ଏତଜ୍ଜ୍ଞାନମିତି ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା ॥ ୧୨ ॥

ଅହିଂସା ଅଦାମ୍ଭିକତା କ୍ଷମା ଅମାନତା ।
ଆଚାର୍ଯ୍ୟୋପାସନା ସ୍ଥୈର୍ଯ୍ୟ ଶୌଚ ସରଳତା ॥
ନିରହଙ୍କାରତା ଆତ୍ମ ସଂଯମ ବୈରାଗ୍ୟ ।
ପୁତ୍ର ଦାର ଗୃହେ ଅସକ୍ତି ସ୍ନେହର ତ୍ୟାଗ ॥
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଦୁଃଖର ଯନ୍ତ୍ରଣା ।
ଏ ସକଳେ ଦୋଷ ବାରମ୍ବାର ଆଲୋଚନା ॥
ଇଷ୍ଟ ଅନିଷ୍ଟ ପାତରେ ସମାନ ଚିତ୍ତତା ।
ଆମ୍ଭପ୍ରତି ଭକ୍ତି ପୁଣି ବାସ ନିର୍ଜନତା ॥
ତତ୍ତ୍ୱଜ୍ଞାନ ପୁଣି ଜନ ସମାଜେ ବିରାଗ ।
ଅଧ୍ୟାତ୍ମଜ୍ଞାନ ପରାୟଣ ଆଦି ଶୁଣ ଯୋଗ ॥
ହେ ଅର୍ଜୁନ ଏହି ସବୁ ଯେ ଅଟେ ଜ୍ଞାନ ।
ଏ ସମସ୍ତ ଛଡ଼ି ଆଉ ଯେତେକ ଅଜ୍ଞାନ ॥

ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱାଽମୃତମଶ୍ନୁତେ ।
ଅନାଦି ମତ୍ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ ॥ ୧୩ ॥

ସମ୍ପ୍ରତି ବୋଲିବି ଜ୍ଞେୟ ବିଷୟ ଅର୍ଜୁନ ॥
ମୁକ୍ତିଲାଭ ହୁଏ ଏହା କଲେକ ଶ୍ରବଣ ॥
ଅନାଦି ସ୍ୱରୂପ ନିର୍ବିଶେଷ ବ୍ରହ୍ମଜ୍ଞେୟ ।
ସତ [illegible] ଅସତ ସେହି ନୁହନ୍ତି ଉଭୟ ॥

ସର୍ବତଃ ପାଣିପାଦନ୍ତତ୍ ସର୍ବତୋଽକ୍ଷିଶିରୋମୁଖଂ ।
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥ ୧୪ ॥

ସର୍ବତ୍ର ଯାହାଙ୍କ ଚରଣ । ନୟନ ମସ୍ତକ ବଦନ[illegible]

ସର୍ବତ୍ର ହସ୍ତ ବଦନ । ଅଛନ୍ତି [illegible] ଶ୍ରୁତିମନ୍ତ ॥
ସକଳ କରି ଆବରଣ । କରୁଅଛନ୍ତି ଅବସ୍ଥାନ ।
ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତଂ ।
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ॥ ୧୫ ॥
ସେ ବ୍ରହ୍ମ ଇନ୍ଦ୍ରିୟ ବିହୀନ । ଦିଶନ୍ତି ଇନ୍ଦ୍ରିୟକୁ ସ୍ୱଣ ॥
ଆସକ୍ତି ଶୂନ୍ୟ ସେ ଅଟନ୍ତି । ସକଳ ଭୂତଙ୍କୁ ପାଳନ୍ତି ॥
ଅଟନ୍ତି ଯଦ୍ୟପି ସେ ନିର୍ଗୁଣ । ପାଳନ୍ତି ସତ୍ୟ ଆଦି ଗୁଣ ।
ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ ।
ସୂକ୍ଷ୍ମତ୍ୱାତ୍ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ ॥ ୧୬ ॥
ଥାଆନ୍ତି ଭୂତ ବହିର୍ଭାଗେ । ପୁଣି ସକଳ ଅନ୍ତର୍ଭାଗେ ।
ସ୍ଥାବର ଜଙ୍ଗମ ରୂପରେ । ବିଦିତ ହୁଅନ୍ତି ସଂସାରେ ॥
ସେ ବ୍ରହ୍ମ ସୂକ୍ଷ୍ମର ପ୍ରଯୁକ୍ତେ । ନୁହନ୍ତି ସର୍ବତ୍ର ବିଦିତ ॥
ଥାଆନ୍ତି ସେହି ଅତି ଦୂରେ । ପୁଣି ଥାଆନ୍ତି ନିକଟରେ ॥
ଅବିଭକ୍ତଞ୍ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତଂ ।
ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ ॥ ୧୭ ॥
ଭୂତ ମଧ୍ୟେ ଅବିଭକ୍ତ ରୂପେ କରି ବାସ ।
ଅଥଚ ବିଭକ୍ତ ରୂପେ ପାଆନ୍ତି ପ୍ରକାଶ ।
ସ୍ଥିତି କାଳେ ଭୂତଗଣେ କରନ୍ତି ପାଳନ ।
ପ୍ରଳୟ କାଳରେ ସର୍ବେ କରନ୍ତି ନିଧନ ॥
ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ ।
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ଧିଷ୍ଠିତଂ ॥୧୮ ॥
ଜ୍ୟୋତିଷ ମଣ୍ଡଳୀ ଜ୍ୟୋତି ଅନ୍ଧକାରାତୀତ ।
ଜ୍ଞାନଜ୍ଞେୟ ଜ୍ଞାନଗମ୍ୟ ହୃଦି ଅବସ୍ଥିତ ॥
ଇତି କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଞ୍ଚୋକ୍ତଂ ସମାସତଃ ।

ମଦ୍ଭକ୍ତ ଏତଦ୍ବିଜ୍ଞାୟ ମଦ୍ଭାବାୟୋପପଦ୍ୟତେ ॥ ୧୯ ॥

ଷେତ୍ର ଜ୍ଞାନ ଜ୍ଞେୟ ଏହି ତିନ ଫାଲଗୁନି ।
ସଂକ୍ଷେପେ ତୁମ୍ଭଠାରେ କଲୁଁ ଯେ କୀର୍ତ୍ତନ ॥
ଆମ୍ଭ ଭକ୍ତଗଣ ଏହା ଜାଣି ଅବଗତ ।
ହୃଦୟ ମଧ୍ୟରେ ଲାଭ କରନ୍ତି ବ୍ରହ୍ମତ୍ୱ ॥

ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି ।
ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସମ୍ଭବାନ୍ ॥ ୨୦ ॥

ପ୍ରକୃତି ପୁରୁଷ ଦୁହେଁ ଜାଣନ୍ତି ଅନାଦି ।
ବିକାର ଅଟନ୍ତି ଏହି ଦେହ ଇନ୍ଦ୍ରିୟାଦି ॥
ସୁଖ ଦୁଃଖ ମୋହ ଆଦି ଯାବତୀୟ ଗୁଣ ।
ହେ ପାର୍ଥ ପ୍ରକୃତିଠାରୁ ହୋଇଛି ଉତ୍ପନ୍ନ ॥

କାର୍ଯ୍ୟକାରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ ।
ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ ॥ ୨୧ ॥

ଶରୀର ଇନ୍ଦ୍ରିୟଗଣ କର୍ତ୍ତୃତ୍ୱ ବିଷୟେ ।
ପ୍ରକୃତି କାରଣ ବୋଲି ଜାଣିବ ନିଶ୍ଚୟେ ॥
ସୁଖ ଦୁଃଖ ଭୋଗ ବିଷୟରେ ଶୁଣ ହେ ପାର୍ଥ ।
ପୁରୁଷ କାରଣ ମାତ୍ର ଅଛି ନିରୂପିତ ॥

ପୁରୁଷଃ ପ୍ରକୃତିସ୍ଥୋ ହି ଭୁଙ୍କ୍ତେ ପ୍ରକୃତିଜାନ୍ ଗୁଣାନ୍ ।
କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍ୟୋନିଜନ୍ମସୁ ॥ ୨୨ ॥

ପୁରୁଷ ପ୍ରକୃତି ଦେହେ କରି ଅବସ୍ଥାନ ।
ଭୋଗ କରେ ଜନ୍ତୁ ଜାତ ସୁଖ ଦୁଃଖମାନ ॥
ଇନ୍ଦ୍ରିୟମାନଙ୍କ ସଙ୍ଗେ ସମ୍ପର୍କ ହେବାରୁ ।
ହେତୁ ଅଟେ ସଦସତ ଜନ୍ମ ଲଭିବାର ॥

ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।

ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃ ପରଃ ॥୨୩॥
ଶରୀର ମଧ୍ୟରେ ମଧ୍ୟ ଥିଲେ ବର୍ତ୍ତମାନ ।
ନିରନ୍ତର ଥାଏ ମାତ୍ର ପ୍ରକୃତିରୁ ଭିନ୍ନ ॥
ଯେଣୁ ଏହି ସାକ୍ଷୀରୂପ ଅନୁଗ୍ରହକାରୀ ।
ମହେଶ୍ୱର ଅନ୍ତର୍ଯ୍ୟାମୀ ପୁଣି ରକ୍ଷାକାରୀ ॥
ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଞ୍ଚ ଗୁଣୈଃ ସହ ।
ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ ॥ ୨୪ ।
ଯେଉଁ ଲୋକ ପୁରୁଷକୁ ହୁଏ ଅବଗତ ।
ଏହିରୂପ ଗୁଣଯୁକ୍ତ ପ୍ରକୃତି ସହିତ ॥
ଜଳେମଧ୍ୟ ସେହି ଲୋକ ମାର୍ଗ ତ୍ୟାଗକରି ।
ଜନ୍ମ ନ ଧରଇ ଶେଷେ ଲଭ ମୁକ୍ତିଧାମ ॥
ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା ।
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ॥ ୨୫ ॥
କେହି କେହି ମନଦ୍ୱାରା କେହି କରି ଧ୍ୟାନ ।
କରନ୍ତି ଆତ୍ମାକୁ ଦେହ ମଧ୍ୟେ ସନ୍ଦର୍ଶନ ॥ •
କେହି ସାଂଖ୍ୟ ଯୋଗେ* କେହି ଅବା କର୍ମ ଯୋଗେ ।
ଦେଖନ୍ତି ଆତ୍ମାକୁ ନିଜ ଦେହ ଅନ୍ତର୍ଭାଗେ ॥
ଅନ୍ୟେ ତ୍ୱେବମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ ।
ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ ॥ ୨୬ ॥
କେହି କେହି ଏମନ୍ତ ଅବା ଆତ୍ମାକୁ ନ ଜାଣି ।
ଥାଆନ୍ତି ନିଷ୍ଠିନ୍ତ କରି ଗୁରୁ କଥା ଶୁଣି ॥
କରନ୍ତି ତାଙ୍କର ଉପାସନା ହୋଇ ମନ ।
କରନ୍ତି ଯେ ମୁକ୍ତିଲାଭ ସେହି ସେହି ଜନ ॥

---

• ପ୍ରକୃତି ପୁରୁଷର ବୈଲକ୍ଷଣ୍ୟ ଜ୍ଞାନକୁ ସାଂଖ୍ୟ ଯୋଗ କୋହନ୍ତି ।

ଯାବତ୍ ସଂଜାୟତେ କିଞ୍ଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମଂ ।
କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ତଦ୍ବିଦ୍ଧି ଭରତର୍ଷଭ ॥ ୨୭ ॥

ସ୍ଥାବର ଜଙ୍ଗମାତ୍ମକ ବସ୍ତୁ ହେ ଅର୍ଜୁନ ।
କ୍ଷେତ୍ର କ୍ଷେତ୍ରଜ୍ଞ ଯୋଗରୁ ହୋଇଛି ଉଦ୍ଭବ ॥

ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରଂ ।
ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି ॥ ୨୮ ॥

ଜଗତ ସକଳ ଭୂତେ ବ୍ରହ୍ମ ସନାତନ ।
ନିର୍ବିଶେଷରୂପେ କରୁଛନ୍ତି ଅବସ୍ଥାନ ॥
ସ୍ଥାବର ଜଙ୍ଗମାତ୍ମକ ଦେହ ହେଲେ ନଷ୍ଟ ।
ନ ହୁଅନ୍ତି ପରବ୍ରହ୍ମ କଦାଚ ବିନଷ୍ଟ ॥

ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରଂ ।
ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିଂ ॥ ୨୯ ॥

ଈଶ୍ୱର ସକଳ ଭୂତେ ସମାନ ଭାବରେ ।
ଅବସ୍ଥାନ କରୁଛନ୍ତି ସର୍ବ ସମୟରେ ॥
ଏହାଙ୍କୁ ଦେଖିଲେ ଜୀବେ ଯାନ୍ତି ପରାଗତି ।
ତାହାଦ୍ୱାରେ ହୁଏ ନାହିଁ ଆତ୍ମାର ଦୁର୍ଗତି ॥

ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।
ଯଃ ପଶ୍ୟତି ତଥାତ୍ମାନମକର୍ତ୍ତାରଂ ସ ପଶ୍ୟତି ॥ ୩୦ ॥

ନ କରନ୍ତି ଆତ୍ମା କିଛି କର୍ମ ସମ୍ପାଦନ ।
ପ୍ରକୃତି ସକଳ କର୍ମ କରଇ ସମ୍ପନ୍ନ ॥
ଏହି କଥା ଜ୍ଞାନ କରିଅଛି ଯେଉଁ ଜନ ।
ଯଥାର୍ଥ ଦର୍ଶନକାରୀ ଅଟେ ସେହି ଜଣ ॥

ଯଦା ଭୂତପୃଥଗ୍ଭାବମେକସ୍ଥମନୁପଶ୍ୟତି ।

ତତ ଏବ ଚ ବିସ୍ତାରଂ ବ୍ରହ୍ମ ସମ୍ପଦ୍ୟତେ ତଦା ॥ ୩୧ ॥

ଏକମାତ୍ର ପ୍ରକୃତିରେ ଅବସ୍ଥାନ ଭୂତ ।
ପୃଥକ ପୃଥକ ଭାବ ରୂପେ ତାହା ହୁତ ॥
ଏ କଥା ପାରନ୍ତି ଜାଣି ଯେଉଁ ମହାଜନ ।
ଅବଶ୍ୟ ସେ ପ୍ରାପ୍ତ ହୁଏ ବ୍ରହ୍ମ ସନାତନ ॥

ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।
ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ ॥ ୩୨ ॥

ଅନାଦି ପରମ ଆତ୍ମା ଦେହେ ଅବସ୍ଥାନ ।
କଲେମଧ୍ୟ ନ କରନ୍ତି କର୍ମ ଅନୁଷ୍ଠାନ ॥
ଅନାଦିତ୍ୱ ନିର୍ଗୁଣତ୍ୱ ହେତୁ ସେ ଈଶ୍ୱର ।
କର୍ମରୁ ସ୍ୱତନ୍ତ୍ର ହୋଇଥାନ୍ତି ନିରନ୍ତର ॥
ଥିଲେମଧ୍ୟ ଏହି ଦେହ ମଧ୍ୟେ ସଦା ବ୍ୟାପ୍ତ ।
କଦାଚିତ ନ ହୁଅନ୍ତି କର୍ମ ଫଳେ ଲିପ୍ତ ॥

ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।
ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ ॥ ୩୩ ॥

ଯେମନ୍ତ ଆକାଶ ଥାଏ ସକଳ ବସ୍ତୁରେ ।
ମାତ୍ର ସେ ଆକାଶ ଲିପ୍ତ ନୁହଇ କାହିଁରେ ॥
ତେମନ୍ତ ସମସ୍ତ ଦେହେ ଆତ୍ମା ଅବସ୍ଥାନ ।
ଆତ୍ମାକୁ ବିକୃତ ନ କରଇ ଦେହ ଗଣ ॥

ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକମିମଂ ରବିଃ ।
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ ॥ ୩୪ ॥

ଯେମନ୍ତ ଏକ ଦିବାକର । ପ୍ରକାଶେ ସକଳ ସଂସାର ।
ତେମନ୍ତ ଆତ୍ମା ଏକମାତ୍ର । ସକଳ ଦେହେ ପ୍ରକାଶିତ ॥

କ୍ଷେତ୍ର କ୍ଷେତ୍ରଜ୍ଞୟୋରେବମନ୍ତରଂ ଜ୍ଞାନଚକ୍ଷୁଷା ।

ଭୂତପ୍ରକୃତିମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରଂ ॥ ୩୫ ॥

ଜ୍ଞାନଚକ୍ଷୁରେ ଯେଉଁ ନର । କ୍ଷେତ୍ର କ୍ଷେତ୍ରଜ୍ଞର ଅନ୍ତର ।
ଭୌତିକ ପ୍ରକୃତିରୁ ବାଛ । ମୁକ୍ତି ଉପାୟ ଜାଣିଅଛ ॥
ପରମ ଜ୍ଞାନୀ ସେହି ନରେ । ମୋକ୍ଷ ଲଭନ୍ତି ସହଜରେ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ କ୍ଷେତ୍ର କ୍ଷେତ୍ରଜ୍ଞ ଯୋଗୋ ନାମ ତ୍ରୟୋଦଶୋଽଧ୍ୟାୟଃ ୮

---

## ଚତୁର୍ଦ୍ଦଶୋଽଧ୍ୟାୟଃ ।

ଭଗବାନୁବାଚ ।

ପରଂ ଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମଂ ।
ଯଜ୍ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧିମିତୋ ଗତାଃ ॥ ୧ ॥

ବୋଲନ୍ତି କୃଷ୍ଣେ ପୁନର୍ବାର । ଉତ୍ତମ ଜ୍ଞାନ ସମସ୍ତର ।
ଯେ ଜ୍ଞାନ ହୋଇ ଅବଗତ । ଋଷିଏ ହୁଅନ୍ତି ମୁକତ ॥

ଇଦଂ ଜ୍ଞାନମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ ।
ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ ॥ ୨ ॥

ହେଲେ ଏ ଧର୍ମ ଅବଗତ । ଅକ୍ଷୟ ଧର୍ମ ହେବ ପ୍ରାପ୍ତ ।
ସୃଷ୍ଟିରେ ହେବ ନାହିଁ ଜାତ । ପ୍ରଳୟେ ନ ହେବ ବ୍ୟଥିତ ॥

ମମ ଯୋନିର୍ମହଦ୍ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହଂ ।
ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ॥ ୩ ॥

ମହତ ପ୍ରକୃତି ଅଟଇ ଗର୍ଭ ଧାନ ସ୍ଥାନ ।
ସେ ଗର୍ଭେ ଜଗତ ବୀଜ ଦେଉଁ ଯେ ବପନ ।
ତହିଁରୁ [illegible] ଭୂତ ହୁଅନ୍ତି ଉତ୍ପନ୍ନ ॥

ଯଥାର୍ଥ ବୋଇଲି ତୁମ୍ଭେ ତୁହେ ମହାରଥି ॥
ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।
ତାସାଂ ବ୍ରହ୍ମ ମହଦ୍ୟୋନିରହଂ ବୀଜପ୍ରଦଃ ପିତା ॥ ୪ ॥
ସକଳ ଯୋନିର ମଧ୍ୟେ ଶୁଣ ହେ ଭାରତ ।
ମୂର୍ତ୍ତିମନ୍ତ ଯେତେ ପ୍ରାଣୀ ହୋଉଛନ୍ତି ଜାତ ॥
ମହତ ପ୍ରକୃତି ଟି ସେ ସର୍ବ କାରଣ ।
ବୀଜଦାତା ପିତା ମୁହିଁ ଜାଣ ତୁହେଁ ଫାଲଗୁନ ॥
ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।
ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟଂ ॥ ୫ ॥
ପ୍ରକୃତି ସମ୍ଭବ ସତ୍ତ୍ୱ ରଜ ତମ ତିନି ।
ବନ୍ଧନ କରନ୍ତି ଦେହେ ଅତ୍ମାକୁ ନିତ୍ୟ ॥
ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟଂ ।
ସୁଖସଙ୍ଗେନ ବଧ୍ନାତି ଜ୍ଞାନସଙ୍ଗେନ ଚାନଘ ॥ ୬ ॥
ତାହା ମଧ୍ୟେ ନିର୍ମଳ ଯେ ଅଟେ ସତ୍ତ୍ୱ ଗୁଣ ।
ନିତାନ୍ତ ଭାସ୍ୱର ପୁଣି ଉପଦ୍ରବ ଶୂନ୍ୟ ॥
ଅତ୍ମାକୁ କରଇ ସୁଖୀ ହୋଇଣ ସତ୍ତ୍ୱଗୁଣ ।
ତହିଁ ଉପେ ମଧ୍ୟ କରିବ ଜ୍ଞାନବାନ ॥
ରଜୋରାଗାତ୍ମକଂ ବିଦ୍ଧି ତୃଷ୍ଣାସଙ୍ଗ ସମୁଦ୍ଭବ ।
ତନ୍ନିବଧ୍ନାତି କୌନ୍ତେୟ କର୍ମସଙ୍ଗେନ ଦେହିନଂ ॥ ୭ ॥
ଅନୁରାଗ ସ୍ୱରୂପ ଯେ ଅଟେ ରଜୋଗୁଣ ।
ଅଭିଲାଷ ଆସକ୍ତିରୁ ହୋଇଛି ଉତ୍ପନ୍ନ ॥
ଏହି ରଜୋଗୁଣ ପୁଣି ଅଟେ ମହାବୀର ।
ଦେହକୁ ରଖିଛି କର୍ମେ ବନ୍ଧି [illegible]ର ॥
ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାଂ ।

ପ୍ରମାଦାଲସ୍ୟ ନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ ॥ ୮ ॥
ତମୋ ଗୁଣ ଅଜ୍ଞାନରୁ ହୁଅଇ ଉତ୍ପନ୍ନ ।
ସମସ୍ତ ଦେହର ହୁଏ ମୋହର କାରଣ ॥
ସମସ୍ତ ଦେହକୁ ସଦା କରେ ସେହି ଭାରତ ।
ଆଲସ୍ୟ ପ୍ରମାଦ ନିଦ୍ରାଦ୍ୱାରା ନିବଦ୍ଧ ॥
ସତ୍ତ୍ୱଂ ସୁଖେ ସଞ୍ଜୟତି ରଜଃ କର୍ମଣି ଭାରତ ।
ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଞ୍ଜୟତ୍ୟୁତ ॥ ୯ ॥
ପ୍ରାଣି କଲେଣ୍ଡ ସତ୍ତ୍ୱ ସୁଖେ ମଗ୍ନ ।
କର୍ମରେ ନିଯୁକ୍ତ କରି ରଖେ ରଜୋ ଗୁଣ ॥
ତମୋ ଗୁଣ ଢାଙ୍କି ରଖେ ଜ୍ଞାନ ଚେତନ୍ତ ।
ପୁଣି କରେ ବୁଦ୍ଧି ପ୍ରମାଦର ବଶୀଭୂତ ॥
ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ ।
ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା ॥ ୧୦ ॥
ସତ୍ତ୍ୱ ଗୁଣ ବଳ ରଜ ତମେ ଅଭିଭୂତ ।
ରଜୋ ଗୁଣ ବଳ ସତ୍ତ୍ୱ ତମେ ବଶୀଭୂତ ॥
ତଜ ସତ୍ତ୍ୱେ ବଶୀଭୂତ କରେ ତମୋଗୁଣ ।
ଏରୂପେ ଉଭବ ହୋଇଅଛନ୍ତି ଅର୍ଜୁନ ॥
ସର୍ବଦ୍ୱାରେଷୁ ଦେହେଽସ୍ମିନ୍ ପ୍ରକାଶ ଉପଜାୟତେ ।
ଜ୍ଞାନଂ ଯଦା ତଦା ବିଦ୍ୟାଦ୍ବିବୃଦ୍ଧଂ ସତ୍ତ୍ୱମିତ୍ୟୁତ ॥ ୧୧ ॥
ବର୍ଦ୍ଧିତ ହୁଅଇ ଯେତେବେଳେ ସତ୍ତ୍ୱଗୁଣ ।
ପ୍ରକାଶ ଇନ୍ଦ୍ରିୟ ଦ୍ୱାରେ ପାଏ ତତ୍ତ୍ୱଜ୍ଞାନ ॥
ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା ।
ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ ॥ ୧୨ ॥
ରଜୋଗୁଣ ଦେହ ମଧ୍ୟେ ହେଲେ ଉପସ୍ଥିତ ।

ମନୋ‌ଜାତ ହୁଏ କେବ ପବଣ୍ଡୁ ଚ୍ଛାନ୍ତ ॥
ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।
ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ ॥ ୧୩ ॥
ବଢ଼ିଲ ଦେହେ ତମୋଗୁଣ । ବଢ଼ଇ ନାନ୍ଦୁ ତତକ୍ଷଣ ॥
ହୁଏ ମନରେ ଅପ୍ରବୃତ୍ତ । ପ୍ରମାଦ ମୋହର ଉତ୍ପନ୍ନ ॥
ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ ପ୍ରଳୟଂ ଯାତି ଦେହଭୃତ୍ ।
ତଦୋତ୍ତମବିଦାଂ ଲୋକାନମଲାନ୍ ପ୍ରତିପଦ୍ୟତେ ॥ ୧୪ ॥
ବୃଦ୍ଧି ହେବାରୁ ସତ୍ତ୍ୱଗୁଣ । ଯେ ପ୍ରାଣୀ ତେଜଇ ଜୀବନ ॥
ଉତ୍ତମର ପାଇ ସଙ୍ଗରେ । ଦିବ୍ୟ ଲୋକକୁ ଲାଭ କରେ ॥
ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ ।
ତଥା ପ୍ରଲୀନସ୍ତମସି ମୂଢ଼ଯୋନିଷୁ ଜାୟତେ ॥ ୧୫ ॥
ରଜୋଗୁଣର ବୃଦ୍ଧି ହେତୁ । କାହାର ଯେବେ ଘଟେ ମୃତ୍ୟୁ ॥
ସେ ଲୋକ ଜନ୍ମ ଲାଭ କରେ । କର୍ମଠ ମନୁଷ୍ୟ ଯୋନିରେ ॥
ତମକୁ କରିଣ ଆଶ୍ରୟ । ଯଦ୍ୟପି କେହୁ ତେଜେ ଦେହ ॥
ପଶ୍ୱାଦି ଯୋନି ହୋଇ ପ୍ରାପ୍ତ । ପୁଣି ପୃଥ୍ୱୀରେ ହୁଏ ଜାତ ॥
କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳଂ ।
ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳଂ ॥ ୧୬ ॥
ସାତ୍ତ୍ୱିକ କର୍ମ ଫଳ ସୁଖ । ରାଜସ କର୍ମ ଫଳ ଦୁଃଖ ॥
ତାମସ କର୍ମ ଫଳ ଜାଣ । ଅଟଇ ମହାଘ ଅଜ୍ଞାନ ॥
ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ ।
ପ୍ରମାଦମୋହୌ ତମସୋ ଭବତୋଽଜ୍ଞାନମେବ ଚ ॥ ୧୭ ॥
ସତ୍ତ୍ୱରୁ ଜାତ ହୁଏ ଜ୍ଞାନ । ରଜରୁ ଜାତ ଲୋଭ ଗୁଣ ॥
ତମରୁ ଜନଇ ପ୍ରମାଦ । ମୋହ ଅଜ୍ଞାନ ଆଉ ଭେଦ ॥
ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।

ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ॥ ୧୮ ॥

ସତ୍ତ୍ୱଗୁଣ ଯେ ନଏ ଉର୍ଦ୍ଧ୍ୱେ । ରଜୋ ଗୁଣ ଯେ ନଏ ମଧ୍ୟେ ॥
ତମରୁ ଯେତେ ଫଳ ଜାତ । ଲୋକଙ୍କୁ ଦିଏ ଅଧଃପାତ ॥

ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦା ଦ୍ରଷ୍ଟାନୁପଶ୍ୟତି ।
ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍ଭାବଂ ସୋଽଧିଗଚ୍ଛତି ॥ ୧୯ ॥

ବିବେକମନୁଷ୍ୟ ଗୁଣ ଦୋଷ ଭାବ ଧ୍ୟାନ [illegible]
ସକଳ ଗୁଣଙ୍କୁ କର୍ତ୍ତା ବୋଲି [illegible] ଜାଣି [illegible]
ଗୁଣରୁ ଆତ୍ମାକୁ ଶ୍ରେଷ୍ଠ ବୋଲି [illegible] ।
ସହଜେ ହୁଅନ୍ତି ପରବ୍ରହ୍ମ ପଦ ପ୍ରାପ୍ତ ॥

ଗୁଣାନେତାନତୀତ୍ୟ ତ୍ରୀନ୍ ଦେହୀ ଦେହସମୁଦ୍ଭବାନ୍ ।
ଜନ୍ମମୃତ୍ୟୁଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ ॥ ୨୦ ॥

ଦେହରୁ ଜାତ ତିନି ଗୁଣ । ଯେ କର ପାରେ ଅ[illegible]
ଜନମ ମୃତ୍ୟୁ ଜରା ଦୁଃଖ । ନ ଭୁଞ୍ଜେ ସେହି ଜ୍ଞାନୀ ଲୋ[illegible]

ଅର୍ଜ୍ଜୁନ ଉବାଚ ।

କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ ।
କିମାଚାରଃ କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତେ ॥ ୨୧ ॥

ଅର୍ଜ୍ଜୁନ ବୋଇଲେ ଅହେ ମଧୁସୂଦନ ।
କେଉଁ ଚିହ୍ନରୁ ଜୀବ ଏହି ତିନି ଗୁଣ ॥
ଅତିକ୍ରମ କରି ପାରେ ଅବା କି ମନ୍ତ୍ରରେ ।
ଏହି ତିନି ଗୁଣ ଅତିକ୍ରମ କରି ପାରେ ॥

ଭଗବାନୁବାଚ ।

ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବ ଚ ପାଣ୍ଡବ ।
ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି ନ ନିବୃତ୍ତାନି କାଂକ୍ଷତି ॥ ୨୨ ॥

ପ୍ରକାଶ ପ୍ରବୃତ୍ତି ମୋହ ଏ ତିନିରେ ପ୍ରବୃତ୍ତ ।

ନେତ୍ରେ ଦ୍ୱେଷ ନ କରଇ ଯେଉଁ ଲୋକ ପାର୍ଥ ।
କବର୍ତ୍ତ ଦେଖିଲେହେଁ ନ କରଇ ଅଭିଳାଷ ।
ସେନ ହୃଦେ ଗୁଣାତୀତ ଅଟଇ ସେ ପୁରୁଷ ॥
ଉଦାସୀନବଦାସୀନୋ ଗୁଣୈର୍ଯୋ ନ ବିଚାଲ୍ୟତେ ।
ଗୁଣା ବର୍ତ୍ତନ୍ତ ଇତ୍ୟେବ ଯୋଽବତିଷ୍ଠତି ନେଙ୍ଗତେ ।
ଉଦାସୀନ ପରି ସ୍ଥିର ଥାନ୍ତି ଚିରକାଳ ।
ସୁଖ ଦୁଃଖମାନ ଯାକୁ ନ କରେ ବ୍ୟାକୁଳ ॥
ଶୁଣ ସବୁ ନିଜ କାର୍ଯ୍ୟେ ଅଛନ୍ତି ବ୍ୟାପୃତ ।
ଏକଥା ବିଚାରି ଯେବା ହୁଏ ଧୈର୍ଯ୍ୟବନ୍ତ ॥
ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ ।
ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ॥ ୨୪ ॥
ସୁଖ ଦୁଃଖେ ତୁଲ୍ୟ ଜ୍ଞାନ ଅଛଇ ଯାହାର ।
ପୁଣି ଯେବା ଆତ୍ମନିଷ୍ଠ ଧୀମାନ ସୁଧୀର ॥
ପ୍ରସ୍ତର କାଞ୍ଚନ ଲୋଷ୍ଟ୍ରେ ଦେଖେ ସମାଦରେ ।
ତୁଲ୍ୟ ଜ୍ଞାନ କରେ ପ୍ରିୟ ଅପ୍ରିୟ ବସ୍ତୁରେ ॥
ଆତ୍ମନିନ୍ଦା ଯାହାର ମନେ ନ ମଣଇ କଷ୍ଟ ।
ଆପଣା ପ୍ରଶଂସା ଶୁଣି ନ ହୁଅଇ ତୁଷ୍ଟ ॥
ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋ ମିତ୍ରାରିପକ୍ଷୟୋଃ ।
ସର୍ବାରମ୍ଭ ପରିତ୍ୟାଗୀ ଗୁଣାତୀତଃ ସ ଉଚ୍ୟତେ ॥ ୨୫ ॥
ଯେ ଲୋକ ମଣଇ ତୁଲ୍ୟ ମାନ ଅପମାନ ।
ଶତ୍ରୁ ପକ୍ଷ ମିତ୍ର ପକ୍ଷ କରେ ସମଜ୍ଞାନ ।
ଆପଣା ଇଚ୍ଛାରେ ଯେବା ହୁଏ କର୍ମତ୍ୟାଗୀ ।
ତିନିଗୁଣଙ୍କୁ ଅତିକ୍ରମ କରେ ସେହି ଯୋଗୀ ॥
ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।

ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ।।୨୬।।

ବ୍ୟଭିଚାର ଶୂନ ଭକ୍ତି ଯୋଗେ ଯେଉଁ ଜନ ।
ସେବା କରେ ଆମ୍ଭ ପଦେ ସ୍ଥିର କରି ମନ ।।
ଅତିକ୍ରମ କରି ଗୁଣ ଯେ ସେବେ ଆମ୍ଭକୁ ।
ସେ ଲୋକ ସମର୍ଥ ମୋକ୍ଷ ପଦ ଲଭିବାକୁ ।।

ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ ।
ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ ।।୨୭।।

ହେ ଅର୍ଜୁନ ଆମ୍ଭେ ବ୍ରହ୍ମ ଆମ୍ଭେ ନିତ୍ୟ ମୋକ୍ଷ ।
ଆମ୍ଭେହିଁ ଶାଶ୍ୱତ ଧର୍ମ ସମ୍ପଦ ପ୍ରତ୍ୟକ୍ଷ ।।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଗୁଣତ୍ରୟବିଭାଗଯୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

## ପଞ୍ଚଦଶୋଽଧ୍ୟାୟଃ

ଭଗବାନୁବାଚ ।

ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟଂ ।
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ।। ୧ ।।

ବୋଇଲେ ଶ୍ରୀବାସୁଦେବ ଶୁଣ ହେ କୌନ୍ତେୟ ।
ସଂସାରସ୍ୱରୂପ ବୃକ୍ଷ ଅଶ୍ୱତ୍ଥ ଅବ୍ୟୟ ।।
ଉପରକୁ ଉଠିଅଛି ଏ ବୃକ୍ଷର ମୂଳ ।
ନିମ୍ନଭାଗେ ଲମ୍ବି ପଡ଼ିଅଛି ସବୁ ଡାଳ ।।
ବେଦ ସବୁ ଏ ବୃକ୍ଷର ପତ୍ରରେ ଗଣିତ ।
ସେହି ବେଦବେତ୍ତା ଯେବା ଅଛି ଏହା ଜ୍ଞାତ ।।

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ
ଅଧଶ୍ଚ ମୂଳାନ୍ୟନୁସନ୍ତତାନି କର୍ମାନୁବନ୍ଧୀନି ମନୁଷ୍ୟଲୋକେ ॥ ୨ ॥

ଡାଳମାନ ଲମ୍ବି ଅଛି ଉପରୁ ତଳକୁ ।
ବଢ଼ାଉଛନ୍ତି ସତ୍ତ୍ୱ ଆଦି ଗୁଣ ଯେ ଏହାକୁ ॥
ଏହା ପତ୍ର ରୂପ ରସ ବିଷୟ ସକଳ ।
ଜନ୍ମେ ଜୀବ ଲୋକେ ଧର୍ମାଧର୍ମ ମାୟା-ମୂଳ ॥

ନ ରୂପମସ୍ୟେହ ତଥୋପଲଭ୍ୟତେ ନାନ୍ତୋ ନ ଚାଦିର୍ନ ଚ ସମ୍ପ୍ରତିଷ୍ଠା
ଅଶ୍ୱତ୍ଥମେନଂ ସୁବିରୂଢ଼ମୂଳମସଙ୍ଗଶସ୍ତ୍ରେଣ ଦୃଢ଼େନ ଛିତ୍ତ୍ୱା ॥ ୩ ॥

ଏ ବୃକ୍ଷ ରୂପ ନ ଦିଶଇ । ଏହାର ଆଦି ଅନ୍ତ ନାହିଁ ॥
କିରୂପେ ଅଛି ଅବସ୍ଥିତ । ଲୋକରେ ଏହା ଅବିଦିତ ॥
କର୍ମ ଅଟେ ଏହି ବୃକ୍ଷ । ମୂଳ ବୁଝି ଲୋଡ଼ି ଦେଖ ॥

ତତଃ ପଦଂ ତତ୍ପରିମାର୍ଗିତବ୍ୟଂ ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ ॥ ୪

ଏ ବୃକ୍ଷ ଶେଷେ ହୋଇ ପ୍ରାପ୍ତ । ନୋହେ ସଂସାରେ ପ୍ରତ୍ୟାବୃତ୍ତ ॥
ଯାହାରୁ ଜନ୍ମିଛି ସଂସାର । ଶରଣ ପଶୁଛି ତାହାର ॥
ଏକଥା ମନରେ ଭାଳିଣ । କରିବ ତାହାଙ୍କ ସନ୍ଧାନ ॥

ନିର୍ମାନମୋହା ଜିତସଙ୍ଗଦୋଷା ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈର୍ଗଚ୍ଛନ୍ତ୍ୟମୂଢ଼ାଃ ପଦମବ୍ୟୟଂ ତତ୍ ॥ ୫ ॥

ଯେଉଁ ଲୋକ ତେଜିଅଛି ଅଭିମାନ ମୋହ ।
ପୁଣି ତେଜିଅଛି ପୁତ୍ର-କଳତ୍ରାଦି ସ୍ନେହ ॥
ସୁଖ ଦୁଃଖ ଦ୍ୱନ୍ଦ୍ୱରୁ ହୋଇଅଛି ମୁକ୍ତ ।
ଅବ୍ୟୟ ପଦକୁ ସେହି ଲୋକ ହୁଏ ପ୍ରାପ୍ତ ॥

ନ ତଦ୍ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ ।
ଯଦ୍ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ ୬ ॥

ଚନ୍ଦ୍ର ସୂର୍ଯ୍ୟ ହୁତାଶନ ନୁହନ୍ତି ସମର୍ଥ ।
କରିବା ଜନମନ୍ତେ ଯାହା ରୂପ ପ୍ରକାଶିତ ॥
ଯାହାଙ୍କୁ ଜାଣିଲେ ଜନ୍ମ ନୋହେ ପୁନର୍ବାର ।
ସେ ବ୍ରହ୍ମ ପରମ ପଦ ଅଟନ୍ତି ମୋହର ॥

ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।
ମନଃ ଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି ॥ ୭ ॥

ଏହି ଜୀବ ଲୋକ ମଧ୍ୟେ ସନାତନ ଜୀବ ।
ମୋର ନିଜ ଅଂଶ ହୋଇ ତାହାକୁ ଜାଣିବ ॥
ପ୍ରକୃତି ବଳୀନ ଷଷ୍ଠ ଇନ୍ଦ୍ରିୟ ଯେସନ ।
ସର୍ବଦା କରଇ ଏହି ଜୀବ ଆକର୍ଷଣ ॥

ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ ।
ଗୃହୀତ୍ୱୈତାନି ସଯାତି ବାୟୁର୍ଗନ୍ଧାନିବାଶୟାତ୍ ॥ ୮ ॥

ବାୟୁ ଯେସନେ ପୁଷ୍ପ ଗନ୍ଧ କରଣି ଗ୍ରହଣ ।
ଏକ ସ୍ଥାନୁ ଅନ୍ୟ ସ୍ଥାନେ କରଇ ଗମନ ॥
ତଦ୍ରୂପ ଗ୍ରହଣି କଲେ ଜୀବ ନବ ଦେହ ।
ପୂର୍ବ ଦେହୁଁ ଯେନ ଯାଏ ଇନ୍ଦ୍ରିୟ ସମୂହ ॥

ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଞ୍ଚ ରସନଂ ଘ୍ରାଣମେବ ଚ ।
ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ ॥ ୯ ॥

ଏ ଜୀବ ଚକ୍ଷୁ ନାସା କର୍ଣ୍ଣେ । ତ୍ୱକ ରସନା ପୁଣି ମନେ ।
ସର୍ବଦା ଥାଇ ଅଧିଷ୍ଠିତ । ଭୁଞ୍ଜଇ ବିଷୟ ସମସ୍ତ ॥

ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଞ୍ଜାନଂ ବା ଗୁଣାନ୍ୱିତଂ ।
ବିମୂଢା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ ॥ ୧୦ ॥

ଦେହାନ୍ତରଗାମୀ କିମ୍ବା ଦେହ ଅବସ୍ଥିତ ।
ବିଷୟ ଭୋଗରେ ଲିପ୍ତ ଇନ୍ଦ୍ରିୟ ସଯୁକ୍ତ ॥

ଏମନ୍ତ ଜୀବକୁ ନ ଦେଖନ୍ତି ମୂଢ଼ ଜନେ ।
ପଣ୍ଡିତେ ଦେଖନ୍ତି ମାତ୍ର ମାନସ ନୟନେ ॥

ଯତନ୍ତୋ ଯୋଗିନଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତଂ ।
ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ ॥୧୧॥

ଯୋଗିଏ ହୋଇ ଯତ୍ନବାନ । ଜୀବକୁ କରନ୍ତି ଦର୍ଶନ ।
ଅଶୁଦ୍ଧ ଚିତ୍ତ ମୂଢ଼ ଜନେ । ନ ଦେଖେ ଜୀବକୁ ନୟନେ ॥

ଯଦାଦିତ୍ୟଗତଂ ତେଜୋ ଜଗଦ୍ଭାସୟତେଽଖିଳଂ ।
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକଂ ॥୧୨॥

ଅନଳ ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତି । ଆମ୍ଭର ତେଜେ ପ୍ରକାଶନ୍ତି ॥

ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା ।
ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋ ଭୂତ୍ୱା ରସାତ୍ମକଃ ॥୧୩॥

ପୃଥିବୀରେ ଥାଇ ଆମ୍ଭେ ତେଜ ପ୍ରଭାବରେ ।
ଧାରଣ କରନ୍ତୁ ଭୂତଗଣେ ନିରନ୍ତରେ ।
ରସାତ୍ମକ ଚନ୍ଦ୍ର ହୋଇ ଆମ୍ଭେ ହେ ଅର୍ଜୁନ ।
ଓଷଧିମାନଙ୍କ ପୁଷ୍ଟି କରୁଁ ସାଧନ ॥

ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ।
ପ୍ରାଣାପାନସମାୟୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧଂ ॥୧୪॥

ହେ ଅର୍ଜୁନ ଆମ୍ଭେ ପୁଣି ଜଠରାଗ୍ନି ହୋଇ ।
ପ୍ରାଣାପାନ ବାୟୁ ସଙ୍ଗେ ଦେହ ମଧ୍ୟେ ଥାଇ ॥
ଚର୍ବ୍ୟ ଚୂଷ୍ୟ ଲେହ୍ୟ ପେୟ ଯାବତ ଆହାର ।
କରୁଁ ପାକ ତହୁଁ ତୁଷ୍ଟି ହୁଅଇ ଶରୀର ॥

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ-
ମତ୍ତଃ ସ୍ମୃତିର୍ଜ୍ଞାନମପୋହନଞ୍ଚ ।
ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ-

ବେଦାନ୍ତକୃଦ୍ବେଦବିଦେବ ଚାହଂ ॥୧୫॥
ସମସ୍ତ ହୃଦୟେ ଅମ୍ଭେ କରୁଅଛୁଁ ବାସ ।
ତାମ୍ଭଠାରୁ ଜ୍ଞାନ ସ୍ମୃତି ହୋଇଛି ପ୍ରକାଶ ॥
ଚାର ବେଦଦ୍ୱାରା ଅମ୍ଭେ ହେଉଁ ଯେ ବଦିତ ।
ତାମ୍ଭେହିଁ ବେଦାନ୍ତକର୍ତ୍ତା ବେଦବେତ୍ତା ପାର୍ଥ ॥
ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥୧୬॥
ଅହେ ସବ୍ୟସାଚୀ କ୍ଷର ଅକ୍ଷର ପୁରୁଷ ।
ଏହି ଦୁଇ କଥା ଅଛି ଜଗତେ ପ୍ରକାଶ ॥
ସମ୍ପ୍ରଦାୟ ଭୂତ କ୍ଷର ନାମରେ କୁହିତ ।
କୂଟସ୍ଥ ପୁରୁଷ ନାମ ଅକ୍ଷର ବଦିତ ॥
ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ॥୧୭॥
ଏମାନଙ୍କ ଭିନ୍ନ ହୋଇଅଛନ୍ତି ପ୍ରକାଶ ।
ପରମାତ୍ମା ନାମେ ଏକ ଉତ୍ତମ ପୁରୁଷ ॥
ସେ ଅବ୍ୟୟ ପରମାତ୍ମା ତ୍ରିଲୋକ ମଧ୍ୟରେ
ଜୀବଙ୍କୁ ପାଳନ କରୁଛନ୍ତି ନିରନ୍ତରେ ॥
ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥୧୮॥
ସଂସାରର ଏହି ଦୁଇ ପ୍ରକାର ସ୍ୱରୂପ ।
ତହୁଁ ଶ୍ରେଷ୍ଠ ହୋଇ ତାମ୍ଭେ ରହିଛୁଁ ସ୍ୱରୂପ ॥
ଏଥକୁ ଆଚରନ୍ତି ବେଦେ ତାମ୍ଭକୁ କୀର୍ତ୍ତନ ।
ଅବ୍ୟୟ ପୁରୁଷୋତ୍ତମ ଅହେ ଫାଲଗୁନ ॥
ଯୋ ମାମେବ ମସମ୍ମୂଢ଼ୋ ଜାନାତି ପୁରୁଷୋତ୍ତମଂ ।

ସ ସର୍ବବିଦ୍ଭଜତି ମାଂ ସର୍ବଭାବେନ ଭାରତ ॥ ୧୯ ॥

ଆମ୍ଭୁ ପୁରୁଷୋତ୍ତମ ଜାଣି ଯେଉଁ ଜନ ।
ନାନାରୂପେ କରେ ପୂଜା ସେହି ମହାଜନ ॥

ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାନଘ ।
ଏତଦ୍ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍କୃତକୃତ୍ୟଶ୍ଚ ଭାରତ ॥ ୨୦ ॥

ତୁମ୍ଭଠାରେ ଗୁହ୍ୟ ଶାସ୍ତ୍ର କଲୁଁ ଯେ କୀର୍ତ୍ତନ ।
ଏକଥା ଜାଣିଲେ ଲୋକେ ହେବେ ବୁଦ୍ଧିମାନ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ପୁରୁଷୋତ୍ତମଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ।

——॥୦✱୦॥——

## ଷୋଡ଼ଶୋଽଧ୍ୟାୟଃ ।

ଶ୍ରୀଭଗବାନୁବାଚ ।

ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟ ସ୍ତପ ଆର୍ଜ୍ଜବ ॥ ୧ ॥
ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନଂ ।
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲଂ ॥ ୨ ॥
ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ ॥ ୩ ॥

ଦୈବ ସମ୍ପଦ କର ଲକ୍ଷ । କହୁ ଲକ୍ଷିର ଯେଉଁ ଲୋକ ।
ଅଭୟ ଦାନ ତତ୍ତ୍ୱ ଶୁଦ୍ଧି । ବ୍ରହ୍ମ ଯଜ୍ଞାଦି ତପୋସିଦ୍ଧି ॥
ଜ୍ଞାନ ଉପାୟେ ପରନିଷ୍ଠା । ଅହିଂସା ସତ୍ୟ ପରିକାଷ୍ଠା ।
ଅକ୍ରୋଧ ତ୍ୟାଗ ଅଖଳତା । ଆର୍ଜ୍ଜବ ଅନତିମାନତା ।

ପ୍ରାଣିବତ୍ସଳ ଦୟାଯୁକ୍ତ । ବାହ୍ୟ ଅନ୍ତର ଶୁଦ୍ଧି ଶାନ୍ତ ॥
ଅଚପଳତା ହ୍ରୀ ମୃଦୁତା । ଅଦ୍ରୋହ କ୍ଷମା ତେଜସ୍ୱିତା ।
ଏମନ୍ତେ ନୃପତା ଏକ୍କ ଭାବ । ଯେତେକ ସୁଗୁଣ ପ୍ରସିଦ୍ଧ ॥
ଷଡ଼ବିଂଶତି ଗୁଣମାନ । ପ୍ରାପ୍ତ ହୁଅଇ ସେହି ଜନ ॥

ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ ।
ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସମ୍ପଦମାସୁରୀଂ ॥ ୪ ॥

ଆସୁର ସମ୍ପଦ ଲକ୍ଷ କହେ ଯେଉଁ ନରେ ।
ଧାରଣ କରନ୍ତି ଜନ୍ମ ପୃଥିବୀ ପୃଷ୍ଠରେ ॥
ଦମ୍ଭ ଦର୍ପ ଅଭିମାନ ଅଜ୍ଞାନ ପାରୁଷ୍ୟ ।
ସେମାନେ ହୁଅନ୍ତି କ୍ରୋଧ ପ୍ରଭୃତିରେ ବଶ ॥

ଦୈବୀ ସମ୍ପଦ୍ୱିମୋକ୍ଷାୟ ନିବନ୍ଧାୟାସୁରୀ ମତା ।
ମା ଶୁଚଃ ସମ୍ପଦଂ ଦୈବୀମଭିଜାତୋଽସି ପାଣ୍ଡବ ॥ ୫ ॥

ଦୈବ ସମ୍ପଦ ଅଟଇ ମୋକ୍ଷର କାରଣ ।
ଆସୁର ସମ୍ପଦ ବନ୍ଧନର ହେତୁ ଜାଣ ॥
ଜନ୍ମ ଅଛି ତୁମ୍ଭେ ଦୈବ ସମ୍ପଦରୁ ଦେଖ ।
ଅତଏବ ଶୋକ ତ୍ୟାଗ [illegible] ॥

ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ ।
ଦୈବୋ ବିସ୍ତରଶଃ ପ୍ରୋକ୍ତ ଆସୁରଂ ପାର୍ଥ ମେ ଶୃଣୁ ॥ ୬ ॥

ହେ ପାର୍ଥ ଆସୁର ଦୈବ ଦୁଇ ରୂପ [illegible] ।
ଇହଲୋକ ମଧ୍ୟେ ହୋଇ ରହନ୍ତି ଜାତି ॥
ଦୈବଲୋକ କଥା ଆମ୍ଭେ କରିଲୁଁ ବର୍ଣ୍ଣନ ।
ଆସୁର ବୃତ୍ତାନ୍ତ ଏବେ ବୋଲୁଅଛୁଁ ଶୁଣ ॥

ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।
ନ ଶୌଚଂ ନାପି ଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ ॥ ୭ ॥

ଆସୁରି ସ୍ୱଭାବ ଲୋକମାନେ ନ ଜାଣନ୍ତି ।
ଧର୍ମରେ ପ୍ରବୃତ୍ତ କିମ୍ବା ଅଧର୍ମୁଁ ନିବୃତ୍ତ ॥
ସେମାନଙ୍କ ନାହିଁ ଶୌଚ ନାହିଁ ଯେ ଆଚାର ।
ନ କରନ୍ତି ମଧ୍ୟ କେବେ ସତ୍ୟ ବ୍ୟବହାର ॥

ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରଂ ।
ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକଂ ॥ ୮ ॥

ସେମାନେ ବୋଲନ୍ତି ଏହି ଜଗତ ଅସତ୍ୟ ।
ଅସ୍ଥିର ଈଶ୍ୱର ଶୂନ୍ୟ ସ୍ୱଭାବରୁ ଜାତ ॥
ସ୍ତ୍ରୀ ପୁରୁଷ ସଂଯୋଗଜ ପୁଣି କାମ ଜନ୍ୟ ।
ଆସୁର ସ୍ୱଭାବ ଲୋକ ମତ ଏହି ଜାଣ ॥

ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଳ୍ପବୁଦ୍ଧୟଃ ।
ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ ॥ ୯ ॥

ସେହି ଅଳ୍ପ ବୁଦ୍ଧି ଲୋକଗଣ ହେ କୌନ୍ତେୟ ।
କରଣ ଯେ ଏହିରୂପ ଅଜ୍ଞାନ ଆଶ୍ରୟ ॥
ହୁଅନ୍ତି ମଳିନ ଚିତ୍ତ ଉଗ୍ରକର୍ମା ପୁଣି ।
ହୋଇଣ ଅହିତକାରୀ ନାଶନ୍ତି ମେଦିନୀ ॥

କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନମଦାନ୍ୱିତାଃ ।
ମୋହାଦ୍ଗୃହୀତ୍ୱାଽସଦ୍ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ॥ ୧୦ ॥

ପୁଣି ଯେ ସେମାନେ ମଦ ଦମ୍ଭ ଅଭିମାନେ ।
ନିଷ୍ଠୁ[illegible] କାମନାକୁ ପୋଷି ମନେ ॥
ମୋହ ହେତୁ ଧରିଣ ଯେ ଅସତ ବ୍ରତକୁ ।
ଆରାଧନା କରନ୍ତି ଯେ କ୍ଷୁଦ୍ର ଦେବତାଙ୍କୁ ।

ଚିନ୍ତାମପରିମେୟାଞ୍ଚ ପ୍ରଳୟାନ୍ତାମୁପାଶ୍ରିତାଃ ।
କାମୋପଭୋଗପରମା ଏତାବଦିତି ନିଶ୍ଚିତାଃ ॥ ୧୧ ॥

ମୂଢ଼ ଏକା ପର୍ଯ୍ୟନ୍ତ ସେହି ଲୋକମାନେ ।
ଅସୀମ ଚିନ୍ତାକୁ ଯୋଡ଼ି ରଖିଥାନ୍ତି ମନେ ॥
କରନ୍ତି ସେମାନେ ମନେ ନିଶ୍ଚୟ ହେ ପାର୍ଥ ।
କାମ ଉପଭୋଗ ଅଟେ ମହା ପୁରୁଷାର୍ଥ ॥

ଆଶାପାଶଶତୈର୍ବଦ୍ଧାଃ କାମକ୍ରୋଧପରାୟଣାଃ ।
ଈହନ୍ତେ କାମଭୋଗାର୍ଥମନ୍ୟାୟେନାର୍ଥସଞ୍ଚୟାନ୍ ॥୧୨॥

ପୁଣି ବଦ୍ଧ ଥାନ୍ତି ଶହ ଶହ ଆଶା ପାଶେ ।
ସର୍ବଦା ସେମାନେ ରହି କାମ କ୍ରୋଧ ବଶେ ॥
କାମ ଭୋଗ ପାଇଁ କରି ବିବିଧ ଅନ୍ୟାୟ ।
ଚୌର୍ଯ୍ୟବୃତ୍ତିଦ୍ୱାରା ଅର୍ଥ କରନ୍ତି ସଞ୍ଚୟ ॥୧୨॥

ଇଦମଦ୍ୟ ମୟା ଲବ୍ଧମିଦଂ ପ୍ରାପ୍ସ୍ୟେ ମନୋରଥମ୍ ।
ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଧନମ୍ ॥୧୩॥

ଆଜି ମୋର ଏହି ମନୋରଥ ହେଲା ପୂର୍ଣ୍ଣ ।
ପୁଣି ମୋର ଏହି ମନୋରଥ ହେବ ପୂର୍ଣ୍ଣ ॥
ଆଜି ମୋର ବର୍ତ୍ତମାନ ଅଛି ଏହି ଧନ ।
ପୁନର୍ବାର ମୋର ପ୍ରାପ୍ତ ହେବ ଏହି ଧନ ॥

ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।
ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଲବାନ୍ ସୁଖୀ ॥୧୪॥

କରିଅଛି ମୁହିଁ ଏହି ଶତ୍ରୁକୁ ବିନାଶ ।
ଅପର ଶତ୍ରୁଙ୍କୁ ମଧ୍ୟ କରିବି ବିନାଶ ॥
ମୁହିଁ ଅଟେ ଭୋଗୀ ସିଦ୍ଧ ବଳିଷ୍ଠ ଈଶ୍ୱର ।
ଅଟେ ସୁଖୀ ଏହିପରି କରନ୍ତି ବିଚାର ॥

ଆଢ୍ୟୋଽଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋ ମୟା ।
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ ଇତ୍ୟଜ୍ଞାନବିମୋହିତାଃ ॥୧୫॥

ମୁହିଁ ଅଟେଁ ବଳବାନ ମୁହିଁ ଟେ କୁଳୀନ ।
କେ ଅଛି ଜଗତ ମଧ୍ୟେ ମୋହର ସମାନ ॥
କରବ ମୁଁ ଦାନ ଯଜ୍ଞ ଘେନି ମୋଦ ପ୍ରମୋଦ ।
ଏରୂପ ଅଜ୍ଞାନତାକୁ ମଣନ୍ତି ସୁଖଦ ॥

ଅନେକଚିତ୍ତବିଭ୍ରାନ୍ତା ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ ॥୧୬॥

ଚିତ୍ତ ବିଭ୍ରମ ମୋହ ପାଶେ । ଜଡ଼ିତ ହୋଇ ଭୂନାସ୍ପୃସେ ॥
କାମରେ ହୋଇ ଆସକତ । ହୁଅନ୍ତି ନରକେ ପତିତ ॥

ଆତ୍ମସମ୍ଭାବିତାସ୍ତବ୍ଧା ଧନମାନମଦାନ୍ୱିତା ।
ଯଜନ୍ତେ ନାମ ଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକଂ ॥୧୭॥

ନିଜକୁ ମଣି ସମ୍ଭାବିତ । ଧନରେ ହୋଇ ଉଦ୍ଧତ ।
ଦେଖାଇ ନିଜ ବଡ଼ପଣ । ବିଧିକୁ କରି ଉଲ୍ଲଙ୍ଘନ ।
ନାମମାତ୍ରକ ଆଚରଣ । କରନ୍ତି ଯଜ୍ଞ ଅନୁଷ୍ଠାନ ॥

ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଞ୍ଚ ସଂଶ୍ରିତାଃ ।
ମାମାତ୍ମପରଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ ॥୧୮॥

ଅହଙ୍କାର ବଳ ଦର୍ପ କାମ କ୍ରୋଧ ଦ୍ୱେଷ ।
ଅପ୍ରାପ୍ତ ପ୍ରବଳ ମନ ଗୁଣେ ହୋଇ ବଶ ॥
ଆପଣାର ଦେହେ ପୁଣି ଅନ ଲୋକ ଦେହେ ।
ଏସମାନେ କରନ୍ତି ଦ୍ୱେଷ ଆମ୍ଭକୁ ନିତ୍ୟେ ॥

ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍ ।
କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ ॥୧୯॥

ଆମ୍ଭେ ସେହି ଦ୍ୱେଷ ପରବଶ କ୍ରୂରଗଣେ ।
ଦୁଷ୍କର୍ମା ନରାଧମଗଣେ ଅନୁକ୍ଷଣେ ॥
ପୁଣି ପୁଣି ଜନ୍ମ ଦେଉ ସଂସାର ମଧ୍ୟରେ ।

ଧାଉଛନ୍ତି ଦୁଷ୍ଟମାନେ ଆସୁର ଯୋନିରେ ॥

ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି ।
ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍ ॥୨୦॥

ଅସୁର ଯୋନିରେ ଜନ୍ମି ସେହି ମୂଢ଼ଗଣ ।
ନ ପାଆନ୍ତି ବହୁତ ଜନ୍ମ ଆମ୍ଭଙ୍କୁ ଦର୍ଶନ ॥
ତହିଁରୁ ଅଧମ ଯୋନି କୃମି କୀଟ ପ୍ରାଣୀ ।
ଗତିକୁ ଲଭନ୍ତି ସେହି ଲୋକେ ଫାଲ୍‌ଗୁନି ॥

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ॥୨୧॥

ନରକ ତ୍ରିବିଧ ଦ୍ୱାର କାମ କ୍ରୋଧ ଲୋଭ ।
ତେଣୁ ଏ ତିନହ ତୁମ୍ଭେ ନିଶ୍ଚୟ ତେଜିବ ॥

ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ ।
ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍ ॥୨୨॥

ଯେ ଲୋକ ଏ ତିନିଦ୍ୱାରୁଁ ହୋଇଥାନ୍ତି ମୁକ୍ତ ।
ଆପଣା କଲ୍ୟାଣ ଲାଗି ସେହି ହୁଅନ୍ତି ରତ ॥
ପରମ ଗତିକୁ ଲାଭ କରେ ସେହି ଜନ ।
ଆମ୍ଭର ସେ ପ୍ରିୟପାତ୍ର ଅଟେ ହେ ଅର୍ଜୁନ ॥

ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ ।
ନ ସ ସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିମ୍ ॥୨୩॥

ଶାସ୍ତ୍ର ବିଧି ପରିତ୍ୟାଗ କରି ଯେଉଁ ଜନ ।
ସ୍ୱେଚ୍ଛାଚାରୀ ହୋଇ କରେ ମନ ଆଚରଣ ॥
ନ ପାଏ ସେ ସିଦ୍ଧି ସୁଖ ପରମ ଗତିକୁ ।
ଅଧମ ଗତିକୁ ଦଏ ଆପଣା ଆତ୍ମାକୁ ॥

ତସ୍ମାଚ୍ଛାସ୍ତ୍ରଂ ପ୍ରମାଣନ୍ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ।

ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି ॥୨୪॥

କାର୍ଯ୍ୟାକାର୍ଯ୍ୟ ବ୍ୟବସ୍ଥାରେ ଶାସ୍ତ୍ରହିଁ ପ୍ରମାଣ ।

କରିବ ଶାସ୍ତ୍ରୋକ୍ତ କର୍ମମାନ ଅନୁଷ୍ଠାନ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସି-କ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋ-ଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଦୈବାସୁରସମ୍ପଦ୍ବିଭାଗ ଯୋଗ-ନାମ ଷୋଡ଼ଶୋଽଧ୍ୟାୟଃ ।

——o——

ସପ୍ତଦଶୋଽଧ୍ୟାୟଃ ।

ଅର୍ଜ୍ଜୁନଉବାଚ ।

ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋ ରଜସ୍ତମଃ ॥ ୧ ॥

ଶାସ୍ତ୍ର ବିଧି ପରିତ୍ୟାଗ କରି ଯେଉଁମାନେ ।
ଶ୍ରଦ୍ଧାରେ ଥାଆନ୍ତି ରତ ଯଜ୍ଞ ଅନୁଷ୍ଠାନେ ॥
ସେମାନଙ୍କ ଶ୍ରଦ୍ଧା ହେବ କେମନ୍ତ ଉପେକ୍ଷା ।
ସାତ୍ତ୍ୱିକ ବା ତାମସିକ କମ୍ବା ରାଜସିକ ॥

ଶ୍ରୀଭଗବାନୁବାଚ ।

ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା ।
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ ॥ ୨ ॥

ଦେହୀଙ୍କ ତ୍ରିବିଧ ଶ୍ରଦ୍ଧା ସ୍ୱଭାବେ ମଧ୍ୟାଗାର ।
ରାଜସିକ ତାମସିକ ସାତ୍ତ୍ୱିକ ପ୍ରକାର ॥

ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ ।
ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ ॥ ୩ ॥

ସତ୍ତ୍ୱଗୁଣ ଅନୁଗତା ଶ୍ରଦ୍ଧା ହେ କୌନ୍ତେୟ ।

ତାହାଙ୍କୁ ପୁରୁଷ ସର୍ବ ପୁଣି ସତ୍ୟମନ୍ତୁ ॥
ଯେଉଁରୂପ ଯେମାନେ ତହିଁ ଥିବେ ଶ୍ରଦ୍ଧାବାନ ।
ପରେ ମଧ୍ୟ ସେହିରୂପ ହେବେ ହେ ଅର୍ଜୁନ ॥

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ ।
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ॥ ୪ ॥

ସାତ୍ତ୍ୱିକେ କରନ୍ତି ପୂଜା ଦେବତାମାନଙ୍କୁ ।
ପୂଜନ୍ତି ଯେ ରାଜସିକେ ଯକ୍ଷ ରାକ୍ଷସଙ୍କୁ ॥
ତାମସିକ ଲୋକଙ୍କର [illegible] ।
ଭୂତ ପ୍ରେତ ପୂଜିବେ କହୁ ଅଛେ ମହାରଥୀ ॥

ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋଜନାଃ ।
ଦମ୍ଭାହଙ୍କାରସଂଯୁକ୍ତାଃ କାମରାଗବଳାନ୍ୱିତାଃ ॥ ୫ ॥
କର୍ଷୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।
ମାଂ ଚୈବାନ୍ତଃଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ ॥ ୬ ॥

ଯେଉଁ ହୀନଚେତା ଲୋକେ ଦମ୍ଭ ଅହଙ୍କାରେ ।
କାମ ରାଗ ଅବା ନିଜ ବଳ ବିକ୍ରମରେ ॥
ଶାସ୍ତ୍ରର ବିଧାନ ବିନା ଘୋର ନିର୍ବିଚାରେ ।
ଯୁକ୍ତ ଆଚରନ୍ତି ତପସ୍ୟାରେ ନିରନ୍ତର ॥
ହେ କୌନ୍ତେୟ ସେହି ସର୍ବ ଅବିବେକୀ ଲୋକ ।
ଆପଣା ଦେହକୁ କଷ୍ଟ ଦେଇ ଅନର୍ଥକ ॥
ଦିଅନ୍ତି ଅନ୍ତରବାସୀ ଆମ୍ଭକୁ ଯନ୍ତ୍ରଣା ।
ସେହି କ୍ରୂର ଲୋକଙ୍କର କାର୍ଯ୍ୟ ବିଡ଼ମ୍ବନା ॥

ଆହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ ।
ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ ॥ ୭ ॥

ଲୋକଙ୍କ ପ୍ରୀତିକର ତିନି ପ୍ରକାର ଆହାର ।

ତିନ ପ୍ରକାର ଯେ ଯଜ୍ଞ ତପ ତି ପ୍ରକାର ॥
ହେ କୌନ୍ତେୟ ପୁଣି ତିନ ପ୍ରକାର ଯେ ଦାନ ।
ତହିଁର ବିଶେଷ ଭେଦ ବୋଲୁଅଛୁଁ ଶୁଣ ॥

ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ ।
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ॥ ୮ ॥
ଜୀବନ ଉତ୍ସାହ ରୁଚି ବର୍ଦ୍ଧନ ଆରୋଗ୍ୟ ।
ରସ ସ୍ନେହଯୁକ୍ତ ଚିରକାଳସ୍ଥାୟୀ ଭୋଗ୍ୟ ॥
ବଳ ବୁଦ୍ଧି କାନ୍ତି ଭକ୍ଷ ଦ୍ରବ୍ୟ ମନୋହର ।
ସାତ୍ତ୍ୱିକ ଲୋକଙ୍କ ଏହି ସକଳ ଆହାର ॥

କଟ୍ୱମ୍ଳଲବଣାତ୍ୟୁଷ୍ଣତୀକ୍ଷ୍ଣରୂକ୍ଷବିଦାହିନଃ ।
ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ ॥ ୯ ॥
ତିକ୍ତ କଟୁ ଅତି ଅମ୍ଳ ଅତ୍ୟନ୍ତ ଲବଣ ।
ଅତି ରୁକ୍ଷ ଅତି [illegible] ଅତି ଉଷ୍ଣ ତୀକ୍ଷ୍ଣ ॥
ଅତି ଶୋକ ଭୟ ରୋଗପ୍ରଦ ଯେ ଆହାର ।
ରାଜସିକ ଲୋକଙ୍କର ଅଟେ ପ୍ରୀତିକର ॥

ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଞ୍ଚ ଯତ୍ ।
ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟଂ ॥ ୧୦ ॥
ପୂର୍ଣ୍ଣ ଯାବସ୍ଥାନ ହୋଇ ଶୁଣ ହେ ଅର୍ଜ୍ଜୁନ ।
ପର୍ଯ୍ୟୁସିତ ଅପବିତ୍ର ଭକ୍ଷ ଦ୍ରବ୍ୟମାନ ॥
ଗୁରୁପକ୍ୱ ଗତ ରସ ଦୁର୍ଗନ୍ଧ ଉଚ୍ଛିଷ୍ଟ ।
ତାମସିକ ଲୋକଙ୍କର ଆହାର ଉତ୍କୃଷ୍ଟ ॥

ଅଫଳାକାଙ୍କ୍ଷିଭିର୍ଯ୍ୟଜ୍ଞୋ ବିଧିଦୃଷ୍ଟୋ ଯ ଇଜ୍ୟତେ ।
ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ ॥ ୧୧ ॥
ଏକାନ୍ତ ମନରେ ଫଳାକାଙ୍କ୍ଷା ହୋଇ ହୀନ ।

କରନ୍ତି ସାତ୍ତ୍ୱିକ ଲୋକେ ଯଜ୍ଞ ଅନୁଷ୍ଠାନ ॥

ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍ ।
ଇଜ୍ୟତେ ଭରତଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସମ୍ ॥୧୨॥

ଫଳଲଭ ପାଇଁ ଯେଉଁ ଯଜ୍ଞ ଅନୁଷ୍ଠାନ ।
ତାହାକୁ ଜାଣିବ ତୁମ୍ଭେ ରାଜସିକ ଠିକ ॥

ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣମ୍ ।
ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ ॥୧୩॥

ବିଧିହୀନ ମନ୍ତ୍ରହୀନ ଦକ୍ଷିଣା ବର୍ଜିତ ।
ତାମସିକ ଯଜ୍ଞମାନ ଶ୍ରଦ୍ଧା ବିରହିତ ॥

ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚମାର୍ଜ୍ଜବମ୍ ।
ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ ॥୧୪॥

ପ୍ରାଣି ଅହିଂସା ବ୍ରହ୍ମଚର୍ଯ୍ୟା । ଶୁଚିତା ପ୍ରାଜ୍ଞ ଗୁରୁପୂଜା ।
ଋଜୁତା ଦେବ ବିପ୍ରେ ଭକ୍ତି । ଦୈହିକ ତପ ମହାମତି ॥

ଅନୁଦ୍ୱେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଞ୍ଚ ଯତ୍ ।
ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍ମୟଂ ତପ ଉଚ୍ୟତେ ॥୧୫॥

ସ୍ୱଜନର ଅନୁଦ୍ୱେଗ କର । ସତ୍ୟ ତଥ୍ୟ ପ୍ରିୟ ହିତକର ॥
ଅଭ୍ୟାସ କରିବା ପ୍ରଣବ । ବାଙ୍ମୟ ତପସ୍ୟା ଏ ସବ ॥

ମନଃ ପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ।
ଭାବସଂଶୁଦ୍ଧିରିତ୍ୟେତତ୍ତପୋ ମାନସମୁଚ୍ୟତେ ॥୧୬॥

ଚିତ୍ତଶୁଦ୍ଧି ସନ୍ତୁଷ୍ଟି ମୌନ ପ୍ରସନ୍ନବଦନ ।
ଭାବଶୁଦ୍ଧି ମାନସିକ ତପସ୍ୟାର ନାମ ॥

ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ତ୍ରିବିଧଂ ନରୈଃ ।
ଅଫଳାକାଙ୍କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ ॥୧୭॥

ପରମ ଶ୍ରଦ୍ଧାର ଯତନେ । ଫଳ କାମନା ଶୂନ୍ୟମନେ ।

ତପସ୍ୟା ହେଲେ ଅନୁଷ୍ଠିତ । ସାତ୍ତ୍ୱିକ ନାମରେ ନିର୍ଦ୍ଦିଷ୍ଟ ॥
ସତ୍କାରମାନପୂଜାର୍ଥଂ ତପୋଦମ୍ଭେନ ଚୈବ ଯତ୍ ।
କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳମଧ୍ରୁବଂ ॥୧୮॥
ସତ୍କାରମାନ ଅର୍ଥ ଲଭେ । ଦମ୍ଭ ପ୍ରକାଶ ଅନୁଭବେ ।
ଯେ ଯଜ୍ଞ ହୁଏ ଅନୁଷ୍ଠିତ । ସେ ରାଜସିକରେ ବିଖ୍ୟାତ ।
ମୂଢ଼ଗ୍ରାହେଣାତ୍ମନୋ ଯତ୍ ପୀଡ଼ୟା କ୍ରିୟତେ ତପଃ ।
ପରସ୍ୟୋତ୍ସାଦନାର୍ଥଂ ବା ତତ୍ତାମସମୁଦାହୃତଂ ॥୧୯॥
ଯେ ସବୁ ତପସ୍ୟା ଦୁରାଗ୍ରହ ହୋଇ ଘଟଇ ।
ଆତ୍ମପୀଡ଼ା ପରବିନାଶ ନିମିତ୍ତ ଯାଇ ॥
ହେ ପାର୍ଥ ଜାଣିବ ତାହା ଅଟେ ତାମସିକ ।
ଯତନେ କରିବ ତ୍ୟାଗ ଏହା ଜ୍ଞାନୀ ଲୋକ ॥
ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
ଦେଶେ କାଲେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତଂ ॥୨୦॥
କେବଳ ଦାତବ୍ୟ ଜ୍ଞାନେ ଦିଏ ଯାହା ଦାନ ।
ବିବେଚନା କରି ଦେଶ କାଳ ପାତ୍ରମାନ ॥
ଅସମର୍ଥ ଲୋକପ୍ରତି ଯେ ଦାନ ହୁଅଇ ।
ହେ ଭରତ ତାର ନାମ ସାତ୍ତ୍ୱିକ ଅଟଇ ॥
ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଳମୁଦ୍ଦିଶ୍ୟ ବା ପୁନଃ ।
ଦୀୟତେ ଚ ପରିକ୍ଲିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତଂ ॥୨୧॥
ପ୍ରତି ଉପକାର ଅର୍ଥେ ଫଳ ଉଦ୍ଦେଶ୍ୟରେ ।
ଅନୁଷ୍ଠିତ ଯେଉଁ ଦାନ କ୍ଲେଶ ସହକାରେ ॥
ଏମନ୍ତ ଦାନର ନାମ ଅଟେ ରାଜସିକ ।
ଏଉତ୍ତାରେ ଶୁଣ ଯାହା ନାମ ତାମସିକ ॥
ଅଦେଶକାଲେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।

ଅସତ୍କୃତମବଜ୍ଞାତଂ ତତ୍ତାମସ ମୁଦାହୃତଂ ॥୨୨॥

ଅନୁପଯୁକ୍ତ ସ୍ଥାନେ ଯେବା । ଅନୁପଯୁକ୍ତ କାଳେ ଅବା ।
ଅନୁପଯୁକ୍ତ ପାତ୍ରେ ପୁଣି । ସତ୍କାର ତେଜ ଫାଲଗୁନି ॥
ତିରସ୍କାରରେ ଯେଉଁ ଦାନ । ତା ନାମ ତାମସିକ ଜାଣ ॥

ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।
ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା ॥୨୩॥

ଓଁ ତତ୍ ସତ୍ ଏହି ତିନି ଗୋଟି ନାମକି ।
କହୁଛି ବ୍ରହ୍ମଙ୍କ ଏହି ନାମେ ପରବ୍ରହ୍ମ ।
ଏ ତ୍ରିବିଧ ନାମେ ହୋଇଅଛନ୍ତି ସୃଜନ ।
ଋକବେଦ ପ୍ରଭୃ ଯଜ୍ଞ ପ୍ରଭୃତି ବ୍ରାହ୍ମଣ ।

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନ ତପଃକ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାଂ ॥୨୪॥

ତେଣୁ ବ୍ରହ୍ମବାଦୀଙ୍କର ତପ ଯଜ୍ଞ ଦାନ ।
କଷ୍ଟପାଏ ଓଁକାର ଯେ କରି ଉଚ୍ଚାରଣ ॥

ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃକ୍ରିୟାଃ ।
ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷକାଙ୍କ୍ଷିଭିଃ ॥୨୫॥

ମୁକ୍ତି ଇଚ୍ଛାବାନ ଲୋକମାନେ ତପୋଦାନ ।
କରନ୍ତି ଯେ ଓଁକାରକୁ କରି ଉଚ୍ଚାରଣ ॥

ସଦ୍ଭାବେ ସାଧୁଭାବେ ଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ ।
ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ ॥୨୬॥

ଅସ୍ତିତ୍ୱ ସାଧୁତ୍ୱ ମାଙ୍ଗଳିକ କର୍ମ ସେବନ ।
ପ୍ରୟୋଗର ଯୋଗ୍ୟ ହୁଏ ସତ୍ ଶବ୍ଦ ସହଜେ ॥

ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ ।
କର୍ମ୍ମଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ ॥୨୭॥

ଈଶ୍ୱର ଉଦ୍ଦେଶ୍ୟେ କର୍ମମାନ ଅନୁଷ୍ଠାନେ ।
ଶ୍ରଦ୍ଧା ଯୋଗ୍ୟ ହୁଏ ଯଜ୍ଞ ତପୋଦାନେ ॥

ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।
ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ ॥୨୮॥

ହୋମ ଦାନ ତପଃ କେହେଲେ ଅଶ୍ରଦ୍ଧା ସହିତ ।
ଅସତ ବୋଲଣ ତହିଁ ହୁଅଇ କଥିତ ॥
ତେଣୁ ଇହ ପରକାଳେ ନ ହୁଏ ସଫଳ ।
ସେହି କର୍ମମାନ ବୃଥା ହୁଅଇ କେବଳ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଶ୍ରଦ୍ଧାତ୍ରୟବିଭାଗଯୋଗୋ ନାମ ସପ୍ତଦଶୋଽଧ୍ୟାୟଃ ।

---

## ଅଷ୍ଟାଦଶୋଽଧ୍ୟାୟଃ ।

ଅର୍ଜୁନ ଉବାଚ ।

ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁଂ ।
ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍ କେଶିନିଷୂଦନ ॥ ୧ ॥

ଅହେ ମହାବାହୋ ଅହେ ପ୍ରଭୋ ହୃଷୀକେଶ ।
ହେ କେଶିସୂଦନ ମୋତେ ବୋଲନ୍ତୁ ବିଶେଷ ॥
ସନ୍ନ୍ୟାସ ତ୍ୟାଗର ତତ୍ତ୍ୱ କରିବି ଶ୍ରବଣ ।
ପୃଥକ ପୃଥକରୂପେ କରନ୍ତୁ କୀର୍ତ୍ତନ ॥

ଶ୍ରୀଭଗବାନୁବାଚ ।

କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ କବୟୋ ବିଦୁଃ ।
ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ ॥ ୨ ॥

ହେ ଅର୍ଜ୍ଜୁନ ସେହି କଥା ଶୁଣିବା ବିଶେଷ ।
କାମ୍ୟ କର୍ମ ତ୍ୟାଗ ନାମ ଅଟଇ ସନ୍ନ୍ୟାସ ॥
ସର୍ବ ରୂପ କର୍ମ ଫଳ ତ୍ୟାଗକୁ ପଣ୍ଡିତେ ।
ତ୍ୟାଗ ନାମେ ଅଭିହିତ କରନ୍ତି ସନ୍ତତେ ॥
ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ ।
ଯଜ୍ଞଦାନତପଃ କର୍ମ ନ ତ୍ୟାଜ୍ୟମିତି ଚାପରେ ॥ ୩ ॥
ଥୋକାଏ କହନ୍ତି [illegible] ସମସ୍ତ ।
ଦୋଷ ଯୁକ୍ତ ପରିତ୍ୟାଗ କରିବା ଉଚିତ ॥
ଅପରେ ବୋଲନ୍ତି ତପସ୍ୟା ଯେ ଯଜ୍ଞ ଦାନ ।
ପରିତ୍ୟାଗ ନ କରିବ କେବେ ଜ୍ଞାନିଜନ ॥
ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତସତ୍ତମ ।
ତ୍ୟାଗୋ ହି ପୁରୁଷବ୍ୟାଘ୍ର ତ୍ରିବିଧଃ ସମ୍ପ୍ରକୀର୍ତ୍ତିତଃ ॥ ୪ ॥
ଶୁଣ ହେ ଭରତସତ୍ତମ ପ୍ରବୃତ୍ତ ତ୍ୟାଗ ଯାର ନାମ ।
ତାମସ ରାଜସ ସତ୍ତ୍ୱେ ଜାଣ ତିନି ପ୍ରକାର ପ୍ରମାଣ ॥
ଯଜ୍ଞଦାନତପଃ କର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।
ଯଜ୍ଞୋ ଦାନଂ ତପଶ୍ଚୈବ ପାବନାନି ମନୀଷିଣାଂ ॥ ୫ ॥
ତପସ୍ୟା ଆଦି ଦାନ ଯାଗ । କଦାପି ନ କରିବ ତ୍ୟାଗ ।
ସଦା କରିବ ଅନୁଷ୍ଠାନ । ଚିତ୍ତର ଶୁଦ୍ଧିର କାରଣ ॥
ଏତାନ୍ୟପି ତୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଫଳାନି ଚ ।
କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମଂ ॥ ୬ ॥
ନିଶ୍ଚିତ ଉତ୍ତମ ମତ ଶୁଣ ମହାଭାଗ ।
ତୃଷ୍ଣା ଆସକ୍ତି କର୍ମ ଫଳ ପରିତ୍ୟାଗ ।
ସର୍ବଦା କରିବ ଏହି କାର୍ଯ୍ୟ ଅନୁଷ୍ଠାନ ।
ଏଥିରୁ ସୁଫଳ ଲାଭ ହେବଟି ଅର୍ଜ୍ଜୁନ ॥

ନିୟତସ୍ୟ ତୁ ସନ୍ନ୍ୟାସଃ କର୍ମଣୋ ନୋପପଦ୍ୟତେ ।
ମୋହାତ୍ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ ॥ ୭ ॥
ନିତ୍ୟକର୍ମକୁ ପରିତ୍ୟକ୍ତ । କରିବା ନୁହଇ ଉଚିତ ॥
ମୋହେ ତେଜିବା ନିତ୍ୟ କର୍ମ । ତାମସ ଅଟେ ତାର ନାମ ॥
ଦୁଃଖମିତ୍ୟେବ ଯତ୍ କର୍ମ କାୟକ୍ଲେଶଭୟାତ୍ତ୍ୟଜେତ୍ ।
ସ କୃତ୍ୱା ରାଜସଂ ତ୍ୟାଗଂ ନୈବ ତ୍ୟାଗଫଳଂ ଲଭେତ୍ ॥ ୮ ॥
ଦୁଃଖଜନକ କାୟ କ୍ଲେଶ । ଅଥବା ମନେ ମଣି ତ୍ରାସ ।
ତ୍ୟାଗ କରିବା କର୍ମମାନ । ରାଜସ ବୋଲି ତାକୁ ଜାଣ ॥
ରାଜସ ତ୍ୟାଗୀ ଯେଉଁ ଲୋକ । ଲଭି ନ ପାରେ ତ୍ୟାଗ ସୁଖ ॥
କାର୍ଯ୍ୟମିତ୍ୟେବ ଯତ୍ କର୍ମ ନିୟତଂ କ୍ରିୟତେଽର୍ଜ୍ଜୁନ ।
ସଙ୍ଗଂ ତ୍ୟକ୍ତ୍ୱା ଫଳଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ ॥ ୯ ॥
ଆସକ୍ତି କର୍ମ ଫଳ ତେଜ । ନିଜ କର୍ତ୍ତବ୍ୟ ମନେ ହେଜ ।
ହୁଏ ଯେ କର୍ମ ଅନୁଷ୍ଠାନ । ସାତ୍ତ୍ୱିକ ବୋଲି ତାକୁ ଜାଣ ॥
ନ ଦ୍ୱେଷ୍ଟ୍ୟକୁଶଳଂ କର୍ମ କୁଶଳେ ନାନୁଷଜ୍ଜତେ ।
ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀ ଛିନ୍ନସଂଶୟଃ ॥ ୧୦ ॥
ଯେ ତ୍ୟାଗୀ ଅଟେ ସତ୍ତ୍ୱଗୁଣ । ପୁଣି ଯେ ସଂଶୟ ବିହୀନ ॥
ଦୁଃଖଜନକ କର୍ମରେ । କେବେ ସେ ଦ୍ୱେଷ ନ କରେ ॥
ସୁଖଜନକ ଯେ ବିଷୟ । ତହିଁ ସେ ନ କରଇ ସ୍ନେହ ॥
ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।
ଯସ୍ତୁ କର୍ମଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ ॥ ୧୧ ॥
ନିଃଶେଷେ ସମସ୍ତ କାର୍ଯ୍ୟ କରିବାକୁ ତ୍ୟାଗ ।
ଦେହବନ୍ତ କଦାଚିତ ନ ହୁଏ ପାରଗ ॥
ମାତ୍ର ଯେଉଁ ଲୋକ ଅଟେ କର୍ମ ଫଳ ତ୍ୟାଗୀ ।
ହେ ଅର୍ଜ୍ଜୁନ ଲୋକେ ତାକୁ ବୋଲନ୍ତି ସେ ତ୍ୟାଗୀ ॥

ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳଂ ।
ଭବତ୍ୟତ୍ୟାଗିନାଂ ପ୍ରେତ୍ୟ ନ ତୁ ସନ୍ନ୍ୟାସିନାଂ କ୍ୱଚିତ୍ ॥୧୨॥

ଇଷ୍ଟ ଅନିଷ୍ଟ ଇଷ୍ଟାନିଷ୍ଟ । ତ୍ରିବିଧ କର୍ମ ଫଳ ଶ୍ରେଷ୍ଠ ॥
ଯେମାନେ ଅତ୍ୟାଗୀ ଅଟନ୍ତି । ତରମେ ଏ ଫଳ ଭୁଞ୍ଜନ୍ତି ॥
ମାତ୍ର ସନ୍ନ୍ୟାସିମାନେ କେବେ । ନୁହନ୍ତି ଖଣ୍ଡ୍ୟ ଫଳ ନରେ ॥

ପଞ୍ଚୈତାନି ମହାବାହୋ କାରଣାନି ନିବୋଧ ମେ ।
ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାଂ ॥୧୩॥

ସକଳ କର୍ମର ସିଦ୍ଧି ହେବାର ନିମନ୍ତେ ।
ଯେ ପାଞ୍ଚ ପ୍ରକାର ହେତୁ ଲେଖିଛି ବେଦାନ୍ତେ ॥
ଜାଣିବାକୁ ଇଚ୍ଛା ଯେବେ ଥାଏ ହେ ଭାରତ ।
ଆମ୍ଭର ବଚନେ ସେହି ସବ ଶୁଣ ତାତ ॥

ଅଧିଷ୍ଠାନଂ ତଥା କର୍ତ୍ତା କରଣଂ ଚ ପୃଥଗ୍ବିଧଂ ।
ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମଂ ॥୧୪॥

ପୃଥକ ପୃଥକ ଚେଷ୍ଟା ପୃଥକ କରଣ ।
ଦେହ କର୍ତ୍ତା ଦୈବ ଏହି ପାଞ୍ଚ କାରଣ ॥

ଶରୀରବାଙ୍ମନୋଭିର୍ଯତ୍ କର୍ମ ପ୍ରାରଭତେ ନରଃ ।
ନ୍ୟାଯ୍ୟଂ ବା ବିପରୀତଂ ବା ପଞ୍ଚୈତେ ତସ୍ୟ ହେତବଃ ॥୧୫॥

ନ୍ୟାଯ୍ୟ ବା ଅନ୍ୟାଯ୍ୟ ହେଉ ଯେବେ ନରଗଣ ।
କାୟମନ ବାକ୍ୟେ କାର୍ଯ୍ୟ କରେ ଅନୁକ୍ଷଣ ॥
ସେଥିରେ ଅଟଇ ଏହି ପାଞ୍ଚୀ କାରଣ ।
ନିଶ୍ଚୟ ଜାଣିବ ଏହା ଶୁଦ୍ଧେ ଫାଲ୍ଗୁନି ॥

ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳନ୍ତୁ ଯଃ ।
ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ ॥୧୬॥

ନିରୂପିତ ହେଲେମଧ୍ୟ ଏସବୁ କାରଣ ।

ଯେଉଁ ମୂର୍ଖ କରେ ଶାସ୍ତ୍ରାପ୍ରତ ନିରୀକ୍ଷଣ ।
କଦାଚିତ ସାଧୁଦର୍ଶୀ ନୁହେ ସେ ଦୁର୍ମତି ।
ଯେଣୁ ଏହା ଭଲ୍ଲା ନବୁଝାଇ ଯେ ଗାଉନ୍ତି ॥
ଯସ୍ୟ ନାହଂକୃତୋଭାବୋବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।
ହତ୍ୱାପି ସଇମାଁଲ୍ଲୋକାନ୍ନ ହନ୍ତି ନ ନିବଧ୍ୟତେ ॥୧୭॥
ନିଜକୁ ଯେ କର୍ତ୍ତା ବୋଲି ନ କରେ ବିଚାର ।
ନ ଥାଏ ଯା ବୁଦ୍ଧି କାହିଁ ବ୍ୟାପ୍ତ ନିରନ୍ତର ॥
ସେହୁ ଲୋକ କଲେମଧ୍ୟ ଲୋକ ସବୁ ନଷ୍ଟ ।
ନ ହରନ୍ତି କଦାଚିତ ଲୋକଙ୍କୁ ବିନଷ୍ଟ ॥
ତିନୋଗ ଜନିତ ଫଳ ନ ଲଭେ ସେ ଜନ ।
ନିଶ୍ଚୟ ଜାଣିବ ଏହା ଅଟଇ ପ୍ରମାଣ ॥
ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା ।
କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଂଗ୍ରହଃ ॥୧୮॥
ଜ୍ଞାନ ଜ୍ଞେୟ ପରିଜ୍ଞାତା କର୍ମରେ ପ୍ରବୃତ୍ତି ।
ସମ୍ପାଦନ ହେତୁ ଏହା ଜାଣ ମହାମତି ॥
କାରଣ ଯେ କର୍ମକର୍ତ୍ତା କ୍ରିୟାର ଆଶ୍ରୟ ।
ଏହା ଅଟେ ନିତ୍ୟ ହୃଦେ ଜାଣିବ କୌନ୍ତେୟ ॥
ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ ।
ପ୍ରୋଚ୍ୟତେ ଗୁଣସଂଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି ॥୧୯॥
ସାଙ୍ଖ୍ୟ ଶାସ୍ତ୍ରେ ଯେଉଁ ଜ୍ଞାନ କର୍ମ କର୍ତ୍ତା ପୁଣି ।
ପ୍ରତ୍ୟେକ ସତ୍ତ୍ୱାଦି ଗୁଣ ଭେଦେ ତିନି ତିନ ।
ସେ ସବୁ ବୃତ୍ତାନ୍ତ ତୁମ୍ଭେ କରୁଛ କୀର୍ତ୍ତନ ।
ଏବେ ଅବହିତ ହୋଇ ଶୁଣ ହେ ଅର୍ଜ୍ଜୁନ ॥
ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ ।

ଅବିଭକ୍ତଂ ବିଭକ୍ତେଷୁ ତଜ୍ଜ୍ଞାନଂ ବିଦ୍ଧି ସାତ୍ତ୍ୱିକଂ ॥୨୦॥

ଭିନ୍ନ ଭିନ୍ନ ଭୂତ ମଧ୍ୟେ ଅଭିନ୍ନ ରୂପରେ ।
ଅବ୍ୟୟ ପରମ ଆତ୍ମା ତତ୍ତ୍ୱ ଦୃଷ୍ଟି କରେ ॥
ଏମନ୍ତ ବିଶେଷ ରୂପ ଜାଣେ ଯେଉଁ ଜ୍ଞାନ ।
ତାହାକୁ ସାତ୍ତ୍ୱିକ ବୋଲି ଜାଣିବ ଅର୍ଜୁନ ॥

ପୃଥକ୍ତ୍ୱେନ ତୁ ଯଜ୍ଜ୍ଞାନଂ ନାନାଭାବାନ୍ ପୃଥଗ୍ବିଧାନ୍ ।
ବେତ୍ତି ସର୍ବେଷୁ ଭୂତେଷୁ ତଜ୍ଜ୍ଞାନଂ ବିଦ୍ଧି ରାଜସଂ ॥୨୧॥

ଯେଉଁ ଜ୍ଞାନ ଯୋଗେ ବସ୍ତୁ ପୃଥକ ପୃଥକ ।
ଜଣାଯାଏ ସ୍ୱରୂପ ଯେ ପୃଥକ ପୃଥକ ॥
ଜ୍ଞାନଗଣ କରି ଯାଇଛନ୍ତି ନିରୂପଣ ।
ସେହି ଜ୍ଞାନ ନାମ ଅଟେ ରାଜସିକ ଜାଣ ॥

ଯତ୍ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତମହୈତୁକଂ ।
ଅତତ୍ତ୍ୱାର୍ଥବଦଳ୍ପଂ ଚ ତତ୍ତାମସମୁଦାହୃତଂ ॥୨୨॥

ଈଶ୍ୱର ଅଛନ୍ତି ପ୍ରତିମାରେ ବିଦ୍ୟମାନ ।
ଏମନ୍ତ ଯେ ଅଯୌକ୍ତିକ ଅଶ୍ରଦ୍ଧେୟ ଜ୍ଞାନ ॥
ଜଘନ୍ୟ ଅବାସ୍ତବିକ ଜ୍ଞାନକୁ ପଣ୍ଡିତେ ।
ତାମସିକ ଜ୍ଞାନ ବୋଲି କହନ୍ତି ସମସ୍ତେ ॥

ନିୟତଂ ସଙ୍ଗରହିତମରାଗଦ୍ୱେଷତଃ କୃତଂ ।
ଅଫଲପ୍ରେପ୍ସୁନା କର୍ମ ଯତ୍ତତ୍ସାତ୍ତ୍ୱିକମୁଚ୍ୟତେ ॥୨୩॥

କର୍ତ୍ତୃତ୍ୱଭିମାନ ନ ଥିବା । ନିଷ୍କାମ ହୋଇ ଯେଉଁ ଜନ ।
ଭେଦ ବିଦ୍ୱେଷ ଶୂନ୍ୟ ହୋଇ । ଯେ କାର୍ଯ୍ୟ କରଇ ଉଦ୍ଦେଶ୍ୟ ।
ସେ ନିତ୍ୟ କର୍ମ ନାମ ପାର୍ଥ । ସାତ୍ତ୍ୱିକ ନାମରେ ବିଖ୍ୟାତ ॥

ଯତ୍ତୁ କାମେପ୍ସୁନା କର୍ମ ସାହଙ୍କାରେଣ ବା ପୁନଃ ।
କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତଂ ॥୨୪॥

ଯଳ ବା ଅନୁରାଗୀ ହୋଇ । କ୍ଳେଶରେ ଯେ କର୍ମ କରଇ ॥
ଶୁଣ ହେ ପଣ୍ଡୁର ବାଳକ । ସେ କର୍ମ ନାମ ରାଜସିକ ॥
ଅନୁବନ୍ଧଂ କ୍ଷୟଂ ହିଂସାମନପେକ୍ଷ୍ୟ ଚ ପୌରୁଷଂ ।
ମୋହାଦାରଭ୍ୟତେ କର୍ମ ଯତ୍ତତ୍ତାମସମୁଚ୍ୟତେ ॥୨୫॥
ନା ତନ୍ତ୍ର ଶୁଭାଶୁଭ । ପୌରୁଷ ବନସ୍ଥ ବଢବ ।
ମୋହେ ଯା ହୁଏ ଅନୁଷ୍ଠାନ । ତା ନାମ ତାମସିକ ଜାଣ ॥
ମୁକ୍ତସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହସମନ୍ୱିତଃ ।
ସିଦ୍ଧ୍ୟସିଦ୍ଧ୍ୟୋ ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ॥୨୬
ନିରହଙ୍କାର ଅନାସକ୍ତ । ଉତ୍ସାହ ଧୈର୍ଯ୍ୟ ହୋଇ ଯୁକ୍ତ ॥
ସିଦ୍ଧି ଅସିଦ୍ଧି ବସ୍ତୁରେ । ବିକାର ନାହିଁ ଯା ମନରେ ॥
ଏରୂପ ଯେ କର୍ତ୍ତା ଅଟଇ । ସାତ୍ତ୍ୱିକ ନାମରେ ବୋଲାଇ ॥
ରାଗୀ କର୍ମଫଳପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।
ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ ॥୨୭॥
ଫଳାଭିଳାଷୀ ଅନୁରାଗୀ । ଲୁବ୍ଧ ପ୍ରକୃତ ଅନୁଦ୍ୟୋଗୀ ।
ଅଶୁଚ ହର୍ଷ ହିଂସାତ୍ମକ । ସେ କର୍ତ୍ତା ନାମ ରାଜସିକ ॥
ଅଯୁକ୍ତଃ ପ୍ରାକୃତଃ ସ୍ତବ୍ଧଃ ଶଠୋ ନୈଷ୍କୃତିକୋଽଲସଃ ।
ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ ॥୨୮॥
ଭିନବହୃତ ଭବକେକ । ପଶ୍ଚପମାଣ ୭୦ ଲୋ ୨ ।
ଅଳସ ଉଦ୍ଧତ ଦୁଃଖିତ । ସେ କର୍ତ୍ତା ତାମସିକ ଖ୍ୟାତ ॥
ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ ।
ପ୍ରୋଚ୍ୟମାନମଶେଷେଣ ପୃଥକ୍ତ୍ୱେନ ଧନଞ୍ଜୟ ॥୨୯॥
ଗୁଣାନୁସାରେ ବୁଦ୍ଧି ଧୈର୍ଯ୍ୟ । ତ୍ରିବିଧରୂପେ ଅଛୁ ଧାର୍ଯ୍ୟ ॥
କରୁ ସେ ସର୍ବ ଧାର୍ତ୍ତନ । ହେ ବୀର କରିବା ଶ୍ରବଣ ॥
ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।

ବନ୍ଧଂ ମୋକ୍ଷଞ୍ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ॥୩୦॥
ଯେ ବୁଦ୍ଧି ପ୍ରବୃତ୍ତି ନିବୃତ୍ତି । କାର୍ଯ୍ୟ ଅକାର୍ଯ୍ୟ ଭୟ ଅଭୟ ।
ବନ୍ଧନ ମୋକ୍ଷ ଯେ ଯାବନ୍ତ । ହୋଇ ପାରଇ ଅବଗତ ॥
ଅଛ ଯା ହୃଦାରୂଢ ବୋଧ । ସେ ବୁଦ୍ଧି ସାତ୍ତ୍ୱିକୀ ପ୍ରସିଦ୍ଧ ॥
ଯୟା ଧର୍ମମଧର୍ମଞ୍ଚ କାର୍ଯ୍ୟଞ୍ଚାକାର୍ଯ୍ୟମେବ ଚ ।
ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ ॥୩୧॥
ଧର୍ମ ଅଧର୍ମ କାର୍ଯ୍ୟାକାର୍ଯ୍ୟ । ଯଥାର୍ଥରୂପେ ଅବଗତ ।
ହୋଇ ନ ପାରେ ଯେଉଁ ବୁଦ୍ଧି । ରାଜସୀ ନାମରେ ପ୍ରସିଦ୍ଧି ॥
ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା ।
ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ ॥୩୨॥
ଯେ ବୁଦ୍ଧି ତମସ ଆବୃତ । ଧର୍ମାଧର୍ମଙ୍କୁ ବିପରୀତ ।
କରଇ ଜ୍ଞାନ ଯେଉଁ ବୁଦ୍ଧି । ତାମସୀ ନାମରେ ପ୍ରସିଦ୍ଧି ॥
ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।
ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ॥୩୩॥
ଯେଉଁ ଧୃତି ତତ୍ତ୍ୱ ଏକାନ୍ତତାର କାରଣ ।
ବିଷୟେ ଅନ୍ତର ଯାଇ ନ ପାରେ ଧାରଣ ॥
ମନ ପ୍ରାଣ ଇନ୍ଦ୍ରିୟର କାର୍ଯ୍ୟକୁ ଯେ ଧରେ ॥
ତା ନାମ ସାତ୍ତ୍ୱିକୀ ଧୃତି ବିଖ୍ୟାତ ସଂସାରେ ॥
ଯୟା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜୁନ ।
ପ୍ରସଙ୍ଗେନ ଫଳାକାଙ୍କ୍ଷୀ ଧୃତିଃ ସା ପାର୍ଥ ରାଜସୀ ॥୩୪॥
ପ୍ରସଙ୍ଗତ ଫଳ ଲୋଭ ଅଭିସନ୍ଧି ପାଇଁ ।
ଧର୍ମ ଅର୍ଥ କାମକୁ ଯେ ଧାରଣ କରଇ ॥
ସେ ଧୃତିର ନାମ ଶୁଣ ପାଣ୍ଡବ ମହାମତି ।
ପଣ୍ଡିତେ ବୋଲନ୍ତି ତାକୁ ରାଜସିକ ଧୃତି ॥

ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବ ଚ ।
ନ ବିମୁଞ୍ଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ ॥୩୫॥

ଅଜ୍ଞାନ ପୁରୁଷ ଯେଉଁ ଧୃତି ପ୍ରଭାବରେ ।
ସ୍ୱପ୍ନ ଭୟ ଶୋକ ଗର୍ବ ଅବା ବିଷାଦରେ ॥
ସମ୍ଭାଳି ପାରଇ ନାହିଁ କେବେ ଆପଣାକୁ ।
ତାମସିକାଧୃତି ବୋଲି ଜାଣିବ ତାହାକୁ ॥

ସୁଖନ୍ତ୍ୱିଦାନୀଂ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ ।
ଅଭ୍ୟାସାଦ୍ରମତେ ଯତ୍ର ଦୁଃଖାନ୍ତଞ୍ଚ ନିଗଚ୍ଛତି ॥୩୬॥

ଆସକ୍ତ ହୁଅନ୍ତି ସୁଖେ ଅଭ୍ୟାସରେ ଜନ ।
ଯେ ସୁଖ ଲାଭରେ ଦୁଃଖ ହୁଏ ଅବସାନ ॥
ସେ ତ୍ରିବିଧ ସୁଖ କଥା କହୁଛି ଅର୍ଜୁନ ।
ମନୋଯୋଗୀ ହୋଇ ତାହା କରନ୍ତୁ ଶ୍ରବଣ ॥

ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମଂ ।
ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜଂ ॥୩୭॥

ବିଷପରି ଯାହା ଜଣାଯାଏ ପ୍ରଥମରେ ।
ଅମୃତ ସମାନ ଜ୍ଞାନ ହୁଏ ପଶ୍ଚାତରେ ॥
ଆତ୍ମ ବିଷୟିଣୀ ବୁଦ୍ଧି ଯହିଁରୁ ଜନ୍ମଇ ।
ସାତ୍ତ୍ୱିକ ନାମରେ ସେହି ସୁଖ ଯେ ବୋଲଇ ॥

ବିଷୟେନ୍ଦ୍ରିୟସଂଯୋଗାଦ୍ୟତ୍ତଦଗ୍ରେଽମୃତୋପମଂ ।
ପରିଣାମେ ବିଷମିବ ତତ୍ ସୁଖଂ ରାଜସଂ ସ୍ମୃତଂ ॥୩୮॥

ବିଷୟ ଇନ୍ଦ୍ରିୟଗଣ ସଂଯୋଗ ବଶରେ ।
ଅମୃତ ସମାନ ଜ୍ଞାନ ହୁଏ ପ୍ରଥମରେ ॥
ମାତ୍ର ଶେଷେ ବିଷ ତୁଲ୍ୟ ହୁଏ ଯାହା ଜ୍ଞାନ ।
ରାଜସିକ ସୁଖ ତାହା ଜାଣିବ ଅର୍ଜୁନ ॥

ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନମାତ୍ମନଃ ।
ନିଦ୍ରାଲସ୍ୟପ୍ରମାଦୋତ୍ଥଂ ତତ୍ତାମସମୁଦାହୃତଂ ॥୩୯॥

ପୁଣି ଯେଉଁ ସୁଖ ଅଟେ ତ ଅଥବା ପଶ୍ଚାତେ ।
ତାହା ମୋହ ସମ୍ପାଦନ କରଇ ସଜ୍ଜନେ ॥
ଆଳସ୍ୟ ପ୍ରମାଦ ନିଦ୍ରା ଯହୁଁ ହୁଏ ଜାତ ।
ତାମସିକ ସୁଖ ବୋଲି ତାକୁ ଜେବ ଖ୍ୟାତ ॥

ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ ॥୪୦॥

ପୃଥିବୀସ୍ଥ ଯାବତୀୟ ମନୁଷ୍ୟ ମଧ୍ୟରେ ।
ଦେବତାମାନଙ୍କ ମଧ୍ୟେ ଅଥବା ସ୍ୱର୍ଗରେ ହିଁ ।
ସାତ୍ତ୍ୱିକ ତ୍ରିଗୁଣରୁ ହୋଇଥାଇ ମୁକ୍ତି ।
ଏମନ୍ତ ଲୋକଙ୍କୁ କେହୁ ନ ଦେଖିବ ପାର୍ଥ ॥

ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଞ୍ଚ ପରନ୍ତପ ।
କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ ॥୪୧॥

( ବଙ୍ଗଳାଶ୍ରୀ )

ସ୍ୱଭାବ ପ୍ରଭବ ଗୁଣତ୍ରୟ ଯୋଗେ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ।
ଶୂଦ୍ର ଆଦି ଚତୁର୍ଜାତି କର୍ମମାନ ଭାଗ ହୋଇଛି ବିଶେଷ ॥

ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜଂ ॥୪୨॥

ଆସ୍ତିକ୍ୟ ବିଜ୍ଞାନ ଆର୍ଜବ ଯେ ଜ୍ଞାନ କ୍ଷମା ଶୌଚ ଶମଦମ ।
ଏହୁ କେତେ ସଦ୍‌ଗୁଣ ଯେ ଅଟଇ ବ୍ରାହ୍ମଣ ସ୍ୱଭାବି କର୍ମ ॥

ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଲାୟନଂ ।
ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜଂ ॥୪୩॥

ଦକ୍ଷତା [illegible]ଭାବ ଶୌର୍ଯ୍ୟ ତେଜୋ ସାହସିକତା ସମରେ ।

ଏହି କେତେଗୋଟି ସ୍ୱାଭାବିକ ଗୁଣ ଥାଏ କ୍ଷତ୍ରିୟଙ୍କଠାରେ ॥

କୃଷିଗୋରକ୍ଷବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜଂ ।
ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜଂ ॥୪୪॥
କୃଷି ଗୋ ରକ୍ଷଣ ବାଣିଜ୍ୟ କରଣ ବୈଶ୍ୟମାନଙ୍କର କର୍ମ ।
ଏମାନଙ୍କ ପରିଚର୍ଯ୍ୟା ଯେ ଅଟଇ ଶୂଦ୍ରମାନଙ୍କର ଧର୍ମ ॥

ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ ॥୪୫॥
ମନୁଷ୍ୟେ ଅପଣା କର୍ମେ ଥାଇ ଅନୁରତ ।
ହୁଅନ୍ତି ତହିଁରୁ ଯେ ପ୍ରକାରେ ସିଦ୍ଧି ପ୍ରାପ୍ତ ।
ସ୍ୱକର୍ମ ନିରତ ଯେଉଁ ଲୋକମାନଙ୍କର ।
ଯେରୂପ ହୁଅଇ ସିଦ୍ଧି ଶୁଣ ମହାବୀର ॥

ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତଂ ।
ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ॥୪୬॥
ଯହିଁରୁ ପ୍ରବୃତ୍ତି ହୋଇଅଛି ପ୍ରାଦୁର୍ଭୂତ ।
ରହିଛନ୍ତି ଯେବା ବିଶ୍ୱ ସଂସାରରେ ବ୍ୟାପ୍ତ ॥
ଅର୍ଚ୍ଚନା କରଣ ତାଙ୍କୁ ମନୁଷ୍ୟ ସକଳ ।
ଅବଶ୍ୟ କରନ୍ତି ଲାଭ ଶେଷେ ସିଦ୍ଧି ଫଳ ॥

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷଂ ॥୪୭॥
ଅନୁଷ୍ଠିତ ପରଧର୍ମ ନୁହଇ ଉତ୍କୃଷ୍ଟ ।
ଅଙ୍ଗହୀନ ନିଜ ଧର୍ମ ଅଟେ ମଧ୍ୟ ଶ୍ରେଷ୍ଠ ॥
ଅବଶ୍ୟ ସେଥିରୁ ଦୁଃଖ ଲଭ କଷ୍ଟର ଜନ ।
ସ୍ୱଭାବ ନିୟତ କାର୍ଯ୍ୟ କଲେ ଅନୁଷ୍ଠାନ ॥

ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।

ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ ॥୪୮॥

ଧୂମରେ ଆଚ୍ଛନ୍ନ ଥାଏ ଯେସନେ ହୁତାଶନ ।
ଦୋଷରେ ଆବୃତ ସୁଦ୍ଧେ ହେଲେ ସର୍ବମାନ ॥
ସେହେତୁ ସ୍ୱାଭାବିକ କର୍ମ ଦୋଷଯୁକ୍ତ ।
ପରିତ୍ୟାଗ ନ କରିବ ତାହା କଦାଚିତ ॥

ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତସ୍ପୃହଃ ।
ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସନ୍ନ୍ୟାସେନାଧିଗଚ୍ଛତି ॥୪୯॥

ଜୀବାତ୍ମା ଆସକ୍ତି ଶୂନ୍ୟ ହେଲେ ନିଷ୍କାମ୍ୟ ।
ଯେତେବେଳେ କରିଣ ସେ ସନ୍ନ୍ୟାସ ଆଶ୍ରିଣ ॥
ତେବେ ମାତ୍ର ବନନକୁ ହୋଇ ନମୋଦନ ।
କାର୍ଯ୍ୟ ସ୍ୱରୂପ ସତ୍ତ୍ୱ ଶୁଦ୍ଧି ଲଭେ ଜନ ॥

ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧ ମେ ।
ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା ॥୫୦॥

ବ୍ରହ୍ମ ଲାଭ କରେ ଯେ ଜ୍ଞାନରେ ସିଦ୍ଧ ଜନ ।
ସେହି ଜ୍ଞାନ ନିଷ୍ଠା କଥା କହନ୍ତି କୀର୍ତ୍ତନି ॥

ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।
ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ॥୫୧॥

ମନୁଷ୍ୟ ସକଳ ହୋଇ ଶୁଦ୍ଧ ବୁଦ୍ଧିଯୁକ୍ତ ।
ଧୈର୍ଯ୍ୟଦ୍ୱାରା କରିବ ଯେ ଇନ୍ଦ୍ରିୟ ସଯତ ॥
ଶବ୍ଦାଦି ବିଷୟ ଭୋଗମାନ ପରିହରି ।
ରାଗ ଦ୍ୱେଷ ଆଦି ସବୁ ପରିତ୍ୟାଗ କରି ॥

ବିବିକ୍ତସେବୀ ଲଘ୍ୱାଶୀ ଯତବାକ୍କାୟମାନସଃ ।
ଧ୍ୟାନଯୋଗପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ॥୫୨॥

କାୟ ବାକ୍ୟ ମନୋ[illegible] କରିବ ସଯତ ।
ବୈରାଗ୍ୟ ଆଶ୍ରୟ କରି ଧ୍ୟାନେ ହେବ ରତ ।
ସର୍ବଦା ରହିବ କାଳ ଯୋଗ ଏକାନ୍ତରେ ।

ଅଲପ ଶୁଦ୍ଧ କର ବାର ରହିବ ବର୍ଜନେ ॥
ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହଂ ।
ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ ॥୫୩॥
ଅହଙ୍କାର କାମ କ୍ରୋଧ ବଳ ପରିଗ୍ରହ ।
ସ୍ୱାବଧାନେ ସାଧୁ ଲୋକ ତେଜନ୍ତି ସମସ୍ତ ॥
ତେବେ ଯେ ମମତା ଶୂନ୍ୟ ଶାନ୍ତ ଗୁଣଧାରୀ ।
ହେବ ତେବେ ବ୍ରହ୍ମ ପଦ ଲଭେ ଅଧିକାରୀ ॥
ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି ।
ସମଃ ସର୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ ପରାଂ ॥୫୪॥
ହୋଇ ବ୍ରହ୍ମେ ଅବସ୍ଥିତ ସୁପ୍ରସନ୍ନ ଚିତ୍ତ ।
ନ ହୁଅଇ ସେହୁ ଶୋକ ଲୋଭେ ବଶୀଭୂତ ॥
ସମଦୃଷ୍ଟି ରଖେ ସେହୁ ସର୍ବ ପ୍ରାଣୀ ପ୍ରତି ।
ଅମ୍ଭଠାରେ ଲଭେ ସେହି ଜନ ଦୃଢ଼ ଭକ୍ତି ॥
ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।
ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରଂ ॥୫୫॥
ତଦନନ୍ତର ଭକ୍ତି ପ୍ରଭାବରେ ସେହୁ ଜ୍ଞାନୀ ।
ଅମ୍ଭର ସର୍ବ ବ୍ୟାପିତ୍ୱ ସ୍ୱରୂପକୁ ଜାଣି ॥
ପଞ୍ଚଶାଢ଼େ କରେ ଅମ୍ଭଠାରେ ସେ ପ୍ରବେଶ ।
କଦାଚ ହୁଅଇ ନାହିଁ ତାହାର ବିନାଶ ॥
ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍ବ୍ୟପାଶ୍ରୟଃ ।
ମତ୍ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟଂ ॥୫୬॥
ଲୋକମାନେ ଭଜି ଅମ୍ଭ ନାମକୁ ଆଶ୍ରୟ ।
ଅନୁଷ୍ଠାନ କରନ୍ତି ଯେ କର୍ମ ସମୁଦାୟ ॥
ଅମ୍ଭ ଅନୁକମ୍ପା ବଳେ ପାଆନ୍ତି ଶାଶ୍ୱତ ।

ଅନାଦ ତୁଲ୍ୟ ପଦ କୃତାନ୍ତ ପ୍ରାପତ ॥
ଚେତସା ସର୍ବକର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରଃ ।
ବୁଦ୍ଧିଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ ॥୫୭॥
ହେ ଅର୍ଜୁନ ତୁଅ ଆମ୍ଭ ନାମ ପରାୟଣ ।
ସର୍ବ କର୍ମ ଆମ୍ଭଠାରେ କରଣ ଅର୍ପଣ ॥
ବୁଦ୍ଧିବଳେ ଯୋଗ ମାର୍ଗ କରଣ ଆଶ୍ରୟ ।
ଆମ୍ଭକୁ କରବ ଚିନ୍ତା ସକଳ ସମୟ ॥
ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍ ପ୍ରସାଦାତ୍ତରିଷ୍ୟସି ।
ଅଥଚେତ୍ତ୍ୱମହଙ୍କାରାନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି ॥୫୮॥
ତେବେ ତୁମ୍ଭେ ଆମ୍ଭ କୃପାବଳ ଆଶ୍ରେ କରି ।
ତୁସ୍ତର ସଂସାର ଦୁଃଖ ଯିବ ହେଲେ ତରି ॥
ମାତ୍ର ଦମ୍ଭେ ଆମ୍ଭ ବାକ୍ୟ ନ କଲେ ଶ୍ରବଣ ।
ନିସନ୍ଦେହେ ନାଶ ପ୍ରାପ୍ତ ହେବ ଏହା ଜାଣ ॥
ଯଦହଙ୍କାରମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ ।
ମିଥ୍ୟୈଷ ବ୍ୟବସାୟସ୍ତେ ପ୍ରକୃତିସ୍ତ୍ୱାଂ ନିୟୋକ୍ଷ୍ୟତି । ୫୯ ।
ପ୍ରଚଣ୍ଡ ଯଦ୍ୟପି କରୁଥାଅ ମନ୍ଦ ମନେ ।
କଦାଚ ପ୍ରବୃତ୍ତ ନ ହୋଇବ ତୁମ୍ଭେ ରଣେ ॥
ତୁମ୍ଭଠାରେ ଆମ୍ଭ ଉପଦେଶ ହେବ ବ୍ୟର୍ଥ ।
ପ୍ରକୃତ କରୁଣ ତୁମ୍ଭେ ଯୁଦ୍ଧରେ ପ୍ରବୃତ୍ତ ॥
ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା ।
କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍ କରିଷ୍ୟସ୍ୟବଶୋଽପି ତତ୍ ।
ମୋହ ବଶ ଅଛ ତୁମ୍ଭ ବୁଦ୍ଧି ଅଚ୍ଛାଦିତ ।
ତେଣୁ ତୁମ୍ଭେ ହେଉ ନାହଁ ଯୁଦ୍ଧରେ ପ୍ରବୃତ୍ତ ।
କ୍ଷତ୍ରିୟ ସୁଲଭ ମାନ ଶୂରତା ଅଧୀନରେ

ହୋଇ ଜଗତେ କରିବ ଯେ ଯତ୍ନ ଅନୁଷ୍ଠାନ ॥

ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢାନି ମାୟୟା । ୬୧ ।

ହେ ଅର୍ଜୁନ ଦାରୁ ଯନ୍ତ୍ରେ ସୂତ୍ରଧାରଗଣ ।
କୃତ୍ରିମ ପୁତ୍ତଳିଙ୍କୁ ଯେସନ୍ତେ କରାନ୍ତି ଭ୍ରମଣ ॥
ଈଶ୍ୱର ତେସନେ ହୃଦେ କରି ଅବସ୍ଥାନ ।
କରାଉଅଛନ୍ତି ଜୀବଙ୍କୁ ମାୟାରେ ଭ୍ରମଣ ॥

ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।
ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତଂ ॥୬୨॥

ଈଶ୍ୱର ଶରଣାପନ୍ନ ହୁଅ ତୁମ୍ଭେ ପାର୍ଥ ।
ତାଙ୍କ କୃପାବଳେ ହେବ ନିତ୍ୟଧାମ ପ୍ରାପ୍ତ ॥

ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍ଗୁହ୍ୟତରଂ ମୟା ।
ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ । ୬୩ ।

ଗୁହ୍ୟଜ୍ଞାନ କଥା ଆମ୍ଭେ କଲୁଁ ଯେ କୀର୍ତ୍ତନ ।
ମନକୁ ଯା ରୁଚେ ତାହା କର ଅନୁଷ୍ଠାନ ॥

ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢମିତି ତତୋ ବକ୍ଷ୍ୟାମି ତେ ହିତଂ ॥୬୪॥

ତୁମ୍ଭେ ମୋ ଅତ୍ୟ ପ୍ରିୟତର । ବୋଲୁଅଛୁଁ ପୁଣି ହିତକର ।
ବଚନ ମନ ଦେଇ ଶୁଣ । ଯତ୍ନେ ଜାଣିବ ତତ୍ତ୍ୱଜ୍ଞାନ ॥

ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ॥୬୫॥

ଅନୁବ୍ରତ କର ତୁମ୍ଭେ ଚିତ୍ତ ସମର୍ପଣ ।
ପୁଣି ହେବ ମତ୍ପ୍ରତି ଭକ୍ତି ପରିପୂର୍ଣ୍ଣ ॥
ଅନୁଷ୍ଠାନ କର ଯଜ୍ଞ ଆମ୍ଭର ଉଦ୍ଦେଶେ ।

ଆମ୍ଭର ସ୍ୱରୂପ ପ୍ରାପ୍ତ ହୋଇବ ଜ୍ଞାନମୃତେ ସେ ॥

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ । ୬୬ ।

ସକଳ ପ୍ରକାର ଧର୍ମ କର ପରିତ୍ୟାଗ ।
ଆମ୍ଭପଦ ଶରଣରେ ରଖ ଅନୁରାଗ ।
ତୁମ୍ଭକୁ ସକଳ ପାପୁଁ କରିବୁଁ ଉଦ୍ଧାର ।
କେବେହେଁ ନ ହୁଅ ତୁମ୍ଭେ ଶୋକରେ କାତର ॥

ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।
ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି । ୬୭ ।

ଯେ ଲୋକ ତପ ନ କରଇ । ଅନ୍ତରେ ଯାର ଭକ୍ତି ନାହିଁ ।
ଶୁଶ୍ରୂଷା ବରହିତ ଜନେ । ମୋତେ ନିନ୍ଦନ୍ତି ଯେ ଅଜ୍ଞାନେ ॥
ତାହାଙ୍କୁ କଦାଚ ପାର୍ଥିବ । ଏ ଗୁହ୍ୟ କଥା ନ କହିବ ॥

ଯ ଇମଂ ପରମଂ ଗୁହ୍ୟଂ ମଦ୍ଭକ୍ତେଷ୍ୱଭିଧାସ୍ୟତି ।
ଭକ୍ତିଂ ମୟି ପରାଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ । ୬୮ ।

ଯେ ହୋଇ ଭକ୍ତି ପରାୟଣ । ଏହି ଗୁପତ କଥାଗାନ ।
ବୋଲଇ ଆମ୍ଭ ଭକ୍ତମାନେ । ଆମ୍ଭଙ୍କୁ ପାବ ନିଶ୍ଚୟରେ ॥

ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ ।
ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି । ୬୯ ।

ମନୁଷ୍ୟ ଲୋକରେ ତାହାଠାରୁ ପ୍ରିୟକାରୀ ।
ନାହିଁଟି ଆମ୍ଭର କେହି ଜାଣ ଧନୁର୍ଦ୍ଧାରୀ ॥

ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସମ୍ବାଦମାବୟୋଃ ।
ଜ୍ଞାନଯଜ୍ଞେନ ତେନାହମିଷ୍ଟଃ ସ୍ୟାମିତି ମେ ମତିଃ । ୭୦ ।

ଅଧ୍ୟୟନ କଲେ ଆମ୍ଭମାନଙ୍କ ସମ୍ବାଦ ।
ଜ୍ଞାନ ଯଜ୍ଞ ଯୋଗେ ପୂଜା ହେବ ଆମ୍ଭ ପଦ ॥

ଶ୍ରଦ୍ଧାବାନନସୂୟଶ୍ଚ ଶୃଣୁୟାଦପି ଯୋ ନରଃ ।
ସୋଽପି ମୁକ୍ତଃ ଶୁଭାନ୍ ଲୋକାନ୍ ପ୍ରାପ୍ନୁୟାତ୍ ପୁଣ୍ୟକର୍ମଣାଂ ।୭୧

ଯେଉଁ ଲୋକ ନ କରଇ ଛଳନା ଲୋକ ମନ ।
ଶ୍ରଦ୍ଧାବନ୍ତ ହୋଇ ଶୁଣେ ଏସବୁ ସମ୍ବାଦ ॥
ତାହାର ଦେହରେ କିଛି ପାପ ନ ଲାଗଇ ।
ପୁଣ୍ୟବନ୍ତମାନଙ୍କର ସ୍ଥାନ ପାଏ ସେହି ॥

କଚ୍ଚିଦେତଚ୍ଛ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା ।
କଚ୍ଚିଦଜ୍ଞାନସମ୍ମୋହଃ ପ୍ରନଷ୍ଟସ୍ତେ ଧନଞ୍ଜୟ ।୭୨।

ତୁମ୍ଭଠାରେ କଲୁଁ ଯେଉଁ ବିଷୟ କୀର୍ତ୍ତନ ।
ହେ ଅର୍ଜୁନ ତାହା ସବୁ କଲତ ଶ୍ରବଣ ॥
ଚିତ୍ତ ସାକ୍ଷାତରେ ବୋଲ ସତ୍ୟ ନିଶ୍ଚିତ ।
ହୋଇଅଛି କି ନା ତୁମ୍ଭ ମୋହ ଅପଗତ ॥

ଅର୍ଜୁନ ଉବାଚ ।

ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ ।
ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ।୭୩।

ଅର୍ଜୁନ ବୋଇଲେ ଅହେ ଶୁଣ ଯଦୁନାଥ ।
ମୋହର ସକଳ ମୋହ ହେଲା ଅପଗତ ॥
ତୁମ୍ଭ ପ୍ରସାଦେ ପ୍ରାପ୍ତ ହେଲି ତତ୍ତ୍ୱଜ୍ଞାନ ।
ଦୂର ହୋଇଗଲା ମୋର ସନ୍ଦେହ କାରଣ ॥
ଯେ ଆଜ୍ଞା କଲଇ ତୁମ୍ଭେ ଯାହା ଉପଦେଶ ।
ହେ ମଧୁସୂଦନ ତାହା ପାଳିବି ଅବଶ୍ୟ ॥

ସଞ୍ଜୟ ଉବାଚ ।

ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ ।
ସମ୍ବାଦମିମମଶ୍ରୌଷମଦ୍ଭୁତଂ ଲୋମହର୍ଷଣଂ ।୭୪।

ସଞ୍ଜୟ ବୋଇଲେ ଅହେ ଶୁଣନ୍ତୁ ରାଜନ ।
କୃଷ୍ଣାର୍ଜୁନ ଦୁହିଙ୍କର କଥୋପକଥନ ॥
ମହା ଅଦ୍ଭୁତ ରୋମହର୍ଷଣ ବ୍ୟାପାର ।
ଯାହା ଶୁଣି ଲୋକ ହେବେ ସଂସାରୁ ଉଦ୍ଧାର ॥

ବ୍ୟାସପ୍ରସାଦାଚ୍ଛ୍ରୁତବାନେତଦ୍ ଗୁହ୍ୟତମଂ ପରଂ ।
ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍ କଥୟତଃ ସ୍ୱୟଂ । ୭୫ ।

ବ୍ୟାସ ଅନୁଗ୍ରହେ କୃଷ୍ଣ ଶ୍ରୀମୁଖ ବଚନ ।
ଏ ଗୁପତ ଯୋଗ କଥା କରିଛି ଶ୍ରବଣ ॥

ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ ସମ୍ବାଦମିମମଦ୍ଭୁତଂ ।
କେଶବାର୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ । ୭୬ ।

ଧୃତରାଷ୍ଟ୍ରେ ପୁନର୍ବାର ବୋଇଲେ ସଞ୍ଜୟ ।
କୃଷ୍ଣାର୍ଜୁନ ସମ୍ବାଦ ଅଦ୍ଭୁତ ବିଷୟ ॥
ପୁନଃ ପୁନଃ କରିବାରୁ ଏକଥା ଶ୍ରବଣ ।
ଆନନ୍ଦ ହେଉଛି ବାରମ୍ବାର ମୋର ମନ ।

ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍ଭୁତଂ ହରେଃ ।
ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃ ପୁନଃ । ୭୭ ।

କୃଷ୍ଣ ଅଲୌକିକ ରୂପ କରଣ ସ୍ମରଣ ।
ବିସ୍ମୟ ସାଗରେ ଭାସୁଅଛି ମୋର ମନ ॥

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।
ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ । ୭୮ ।

ସମ୍ପ୍ରତି ମୋହର ହେଉଅଛି ଅନୁଭବ ।
ଯେ ପକ୍ଷେ ଅଛନ୍ତି ଯୋଗେଶ୍ୱର ବାସୁଦେବ ॥
ଯେ ପକ୍ଷରେ ଧନୁର୍ଦ୍ଧାରୀ ଅର୍ଜୁନ ଅଛନ୍ତି ।
ଯେ ପକ୍ଷରେ ରାଜଲକ୍ଷ୍ମୀ ଲାଭ କମ୍ପ ନୀତି ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସି-କ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ସନ୍ନ୍ୟାସଯୋଗୋ ନାମ ଅଷ୍ଟା-ଦଶୋଽଧ୍ୟାୟଃ ।

ସମ୍ପୂର୍ଣ୍ଣଂ ।